# ଜ୍ୟୋସ୍ନା ଧାରା






ଶ୍ରୀ ଭଜନାନନ୍ଦ ସାହାଣୀ

# କୋଣାର୍କ ଯାତ୍ରା

ଲେଖକ

ଶ୍ରୀ ଭଜ୍ଜାନନ୍ଦ ସାହାଣୀ

---

୧ମ ସଂସ୍କରଣ ।

ମୁଦ୍ରାକର —

ଶ୍ରୀ ଗୋବନ୍ଦ ଚନ୍ଦ୍ର ଦାସ

ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସରେ

କଟକ

୧୯୩୬

ମୂଲ୍ୟ [illegible]

# ସମର୍ପଣ

ମୋର ପରମ ନମସ୍ୟ, ସ୍ୱର୍ଗତ ମୟୂରଭଞ୍ଜର ଷ୍ଟେଟ୍ ଲିଡ଼ର ଏବଂ ଉତ୍କଳର ସୁପରିଚିତ ଲେଖକ ଶ୍ରୀଯୁକ୍ତ ଦିବ୍ୟସିଂହ ପାଣିଗ୍ରାହୀ ବି: ଏଲ୍ ମହୋଦୟଙ୍କ ପବିତ୍ର ହସ୍ତରେ ଭକ୍ତିର ନିଦର୍ଶନ ରୂପେ ଏହି ପୁସ୍ତକଟି ସମର୍ପଣ କଲି । ଇତି ।

ବିନୀତ

ଲେଖକ

ଶ୍ରୀଭଜନାନନ୍ଦ ସାହାଣୀ

# ପ୍ରୀତିଦାନ

---

ପ୍ରିୟ ବନ୍ଧୁଗଣ;

ଏହି ପୁସ୍ତକଟି ସାହିତ୍ୟସେବୀଙ୍କ ଉଦ୍ଦେଶ୍ୟେ ସମର୍ପଣ କଲି । ବର୍ତ୍ତମାନ ତୁମ୍ଭେମାନେ ଅଂସ,—"ପ୍ରସାଦ ବାଣ୍ଟିଣ ଖାଇବ, ଅଳ୍ପ ବହୁତ ନ କହିବ" କଥାଟି କାର୍ଯ୍ୟରେ ଦେଖାଇ ମୋର ଏ ପ୍ରୀତି-ଦାନ ନିଅ ଏବଂ ଭବିଷ୍ୟତରେ ପୂର୍ଣ୍ଣ ଭୋଜନ ବା ସମାନ ଭୋଜନ ପାଇଁ ତୁମ୍ଭର ଏ ଅଧମ ବନ୍ଧୁକୁ ଦେଇଯାଅ ସହାନୁଭୂତି ଓ ଉତ୍ସାହ । ଇତି ।

ସ୍ନେହର
ଲେଖକ



# ଉପହାର



ପ୍ରାଣର ଭାନୁ ମୋର,

ମନର ଅପରିପକ୍ୱତା ହେତୁ ବର୍ତ୍ତମାନ ଅବସ୍ଥାରେ କିଛି ନା କିଛି ଲେଖି ପ୍ରକାଶ କରିବାକୁ ଇଚ୍ଛା କରିନଥିଲି । କିନ୍ତୁ ପ୍ରଣୟପୂର ଉପହାର ଯେ ତୁମକୁ କଣ ଦେବି, କିଛି ନ ପାଇବାରୁ ତୁମ ଚନ୍ଦ୍ର-ବଦନରୁ ଝରି ପଡ଼ିଥିବା 'ଜ୍ୟୋତ୍ସ୍ନାଧାର' ରୁ ଏକତ୍ର କରି ପ୍ରକାଶ କଲି ଏବଂ ତାହା ତୁମରି ପୂତ ପ୍ରେମ ହସ୍ତରେ ମୋର ପ୍ରେମ-ଦଗ୍ଧ-ଅନ୍ତରର କରୁଣ କାହାଣୀଜଡ଼ିତ ପ୍ରେମ-ଅଞ୍ଜଳି ରୂପେ ଉପହାର ଦେଲି । ସାଦରେ ଗ୍ରହଣ କରି ମୋର ଏ ବ୍ୟଥା ଉପଶମ କରିବକି ? ଇତି ।

ତୁମର
ପ୍ରେମାଭିଳାଷୀ
ଭଜନାନନ୍ଦ



# ସୂଚୀପତ୍ର

# ଶୁଭ-ଗୀତି

ବଣ୍ଣ-ପଥ!

କଳ୍ପନାର ବଣ ତୁମେ, ଭାବୁକର ଭାବନାର ମେଳୁ
ଅନଳ ସମ ଉତ୍ତ୍ୟକ୍ତ ପ୍ରଳାପର ଶତଆଶା ଦେଉ ?
ନାହିଁ, ନାହିଁ, କଳ୍ପନା-ଗୃହସ୍ଥ-ତୁଳୀ ତା'ର କର ଉପହାସ
ନୂଆ ସୃଷ୍ଟି, ବୈଚିତ୍ର୍ୟ ଦେଖାଇ କୋଟିପ୍ରାଣେ ପରକାଶ ।

ଜଳ ବାୟୁ ଆଲୋକ ଏ ଅଖଣ୍ଡ ଅନନ୍ତ, ମାନବର
କରିପାରେ ସମାଧାନ ଉଚ୍ଚରୂପେ ପୂର୍ଣ୍ଣତା କର୍ମର ।

ତଥା ତୁମେ ଜ୍ୟୋତିରୂପେ କୋଟି କୋଟି ମାନବର ଅଙ୍ଗେ
ସ୍ନେହ ପ୍ରେମ ଗୀତ ନାଚ ନୃତ୍ୟମାଦ ଲେପି ଦେଅ ରଙ୍ଗେ ।
ରଙ୍ଗମଞ୍ଚ ସଜାଇବା ଲାଗି ପୁଣି ତାର ପୂର୍ଣ୍ଣତା ବିକାଶେ
ସୁନିପୁଣ ଶିଳ୍ପୀ ତୁମେ, ଦିଅଇ ନନ୍ଦନ ଓ ହାସେ ।

ଅନ୍ତରର ଅଶ୍ରୁଜାଳ ମାନବ ଯେ ଢାଳୁଛି ପୁରାଣେ,
ଆଜିର ଜଟିଳ ସମସ୍ୟା ରଚେ ଏକ ଭୀଷଣ ସଂଗ୍ରାମ ପରାଣେ ।
ସକଳ ତମସା ଏଡ଼ି ଆଲୋକ ସନ୍ଧାନୀ ନାନା ତଥ୍ୟ ପାରେ ଅନୁଭବ
ଆଙ୍କିପାରେ ଯୁଗନୀତି ସମାଜରେ ନବ ନବ ସ୍ତବ ।

ଖାଲି ଅଙ୍କିତା ଆଶ୍ରୟେ ନାହିଁ କିନ୍ତୁ ବଶ୍ୟତା ନାହିଁ କର୍ମ-ମୋହ,
ଯେଉଁ ଭସ୍ମ ପାଏ ନନ୍ଦା, ସେହି ଭସ୍ମ ସମ ଉଷା-କୋହ
ଉଠିବ ପରାଣେ ଖାଲି, ପଙ୍ଗୁସମ ଗୃହିଁ ଗୃହିଁ ନଭେ
ଲଭିବ ପରାଣୁ ସବୁ ପଶୁସମ ବଡ଼ବଡ଼ ମାନବ ଏ ଭବେ ।

କିନ୍ତୁ ଅହେ ଅନ୍ତର୍ଯ୍ୟାମି ! ଜୀବନେ ଯେ ପଡ଼େ ହାହାକାର
ସତ୍ୟର ଆଲୋକେ ଦିଅ ମାନବକୁ ପୂର୍ଣ୍ଣତା ତାହାର ।

ଅଭିନେତା ଅଭିନେତ୍ରୀ ରଙ୍ଗମଞ୍ଚୁ ଅବସରେ ଅସି
ନ ପାଅନ୍ତୁ ପଦାଘାତ ଶ୍ୱାନ ସମ ହେ ବୈକୁଣ୍ଠବାସି !
ହେଉ ପଛେ ଗଙ୍ଗାଜୀର ଶୁଦ୍ଧପୂତ ପୁଣି ଗୋ ଅବିଳ
ମାତ୍ର ଯାଉନାହିଁ ଶୁଖି ଏକବାର ତାହାର ସଲିଳ,
ପୂର୍ଣ୍ଣଥାଇ ସଂସ୍କାର ବନ୍ଧନେ ଯେବେ ହେବ ଅଶୁଦ୍ଧ ଅଶୁଚି
ନିଜଗୋଡ଼େ ଠିଆହୋଇ କରିପାରେ ନିଷ୍ଟେ ମାନବଯେ ଯୋଗ୍ୟ-
—ତାର ରୁଚି !

କି କହିବ ?-ସ୍ରଷ୍ଟା ତୁମେ, ଯେପରି ଗୋ ଚଳିବ ଜଗତ
ଦିଅ ନବୀନ ଯୁବକହୃଦୟେ ସେହି ନୂଆ ଆଲୋକର ତଥ୍ୟ ।
ପୁରାତନ ନୀତି-ଗଣ୍ଡି ଜୀର୍ଣ୍ଣ ଅଜି ଛିଡ଼ି ପଡୁ ତାହା
ଦିଅ ତବ ଆଶିଷ ବରଷି ନବୀନ ତା ଧରୁ ସତ୍ୟ ରାହା;
ତବ ଆଶୀର୍ବାଦ ଲଭି କରୁ ତାକୁ ନବୀନ, ସବଳ ସୁନ୍ଦର
ଉଠିଯାଉ କୁସଂସ୍କାର ମଇଳା ପରଦା ହେଉ ତାହା ପୂତ ପରିମଳ ।
ଧରଣୀର ଗତିରୂପେ ଧରିଥିଲ ତୁମେ ପରା ଦଶ ଅବତାର
ଅବତରି ତେବେ ଅଜି କିଁ ପାଁ ନ କରିବ ଜୀର୍ଣ୍ଣନୀତିର
ନୂତନ ସଂସ୍କାର ?

ହେ ବିଶ୍ୱ-ପାବନ, ପତିତକୁ ଦ୍ରୁତ କର ଗୋ ଉଦ୍ଧାର
ଉଠୁ ବିଶ୍ୱ ଅନ୍ତରରୁ ନବ ରସେ ସଙ୍ଗୀତ ଝଙ୍କାର ।
ବହୁକାଳ ଧରି ଯେଉଁ ପୁରାତନ ବିଶ୍ୱାସ ପାଦପ
ଉପୁଡ଼ି ପଡୁଛି ତାହା, ରହିଅଛି ମାତର ଅଳପ
ନ ହେବାରୁ ଉପନୀତ କୋଟିପ୍ରାଣ ଶେଷ ସିଦ୍ଧାନ୍ତରେ,
ନାହିଁ ଅସେ ଯେଣୁ ପୂର୍ଣ୍ଣ ସାନ୍ତ୍ୱନା ତା ଆଲୋଚନା ଫଳେ ।
'ବାଡ଼ ଭାଙ୍ଗୁନି, ସାପ ମରୁନି' ଏଣେ ଆନ୍ଦୋଳନ ବାତ୍ୟା,
ବସିଲାଣି କରିଦେବ ଧୂଳିସାତ୍ ଜୀବନର ଯାତ୍ରା,

ଅତିକ୍ରମ ନ କଲେ ଏ ସନ୍ଧିପଥ ଭବିଷ୍ୟ ଜୀବନ
ହେବ ଦଗ୍ଧ ଉଠି ମରୁବାଲୁକାରୁ ତପ୍ତ ସମୀରଣ ।

ଉଚ୍ଛଳ ଯେଉଁ ନୀତି-କରମ-ନଉକା ଜୀବନାବ୍ଧି ପରେ
ହେଲଣି ଦଦରା, ଉଠେ ହାହୁତାଶ କୋଟି ପରାଣରେ,
ଶକ୍ତି ଥାଉଁ ଧ୍ୱଂସ କର ନୂଆଛାଞ୍ଚେ ନ ଗଢ଼ିଲେ ତାହା
ବିଶ୍ୱ-ସ୍ରଷ୍ଟା ! ହେବ ଅସମ୍ଭବ, ଭବିଷ୍ୟରେ ନ ମିଳିବ ରାହା ।

ଯେଉଁ ନୀତି ଯେଉଁ ଧର୍ମେ ଜଗତ ଏ ହୋଇବ ସୁନ୍ଦର
ବତାଅ ହେ ବିଶ୍ୱସାଇଁ, ସେଥେ କ୍ଷିପ୍ର ତୁମ ପୂତ କର ।

---

# ଜ୍ୟୋତ୍ସ୍ନାଧାରା

## ବ୍ୟଥା

ନବୀନ ବୃକ୍ଷ ତଳେ
(ଯେଉଁ) ସ୍ବଚ୍ଛ-ଛବିଟି ହଲେ,
ରଙ୍ଗୀନ୍ ତୂଲୀ ଧରି
( ତାକୁ ) ଅଙ୍କିଛି ପର୍ଣରେ ।
( ଯେଦିନ ) ପରଶିଲି ଏ କର
ଅଙ୍ଗ ତାର କୋମଳ
( ସେଦିନ ) ଫୁଟିଲି ଶେଫାଳିକା
ମଲ୍ଲୀ ଗୋଲାପଦଳ ।
( ଅଜି ) ମରମେ ମରିଯାଏ
ସରମେ ଜଳିଯାଏ
ସେଦିନ କଥା ଯେବେ
ମାନସେ ପଡ଼ିଯାଏ !
ଗଛ ଧରିଲି କଳି
ନୟନ ଗଲି ଥରି
ଆଶା ଓ ଅକାଂକ୍ଷାରେ
ପର୍ଣ୍ଣ ଗଲି ଭରି ।

ପୁଣି ସେ ଗୋ ମୁକୁଳ
ବକଣେ ଫୁଟ ଫୁଲ,
ବାତାୟନେ ମୁଁ ବସି
( ତେଣୁ ) ଗଢ଼ିଲି କାବ୍ୟ-ପୁର ।
ସୌରଭେ ମୋହି ମନ
ମତାଇ ଅନୁକ୍ଷଣ
( ହାୟ ) ଦେଲା ପୁଣି ସେ ଟାଙ୍କି
ବିଷାଦ-ଆବରଣ !
( ହନେ ) ପତର ଲଗା ମକ୍ଷୀ-
ଡାହୁଅ ହାତେ ଧର
ଫିଙ୍ଗିଲି ବାତାୟନେ
ଅଙ୍ଗେ ତା ସ୍ନେହ ସ୍ୱର;
(କାହିଁ) ସେତ ଜାଣିଲା ନାହିଁ
ଅସିଲି କ୍ଷଣେ ଗୃହଁ
ଅସିଲି ଏକବାର
ଚିର ଜୀବନ ପାଇଁ ।
ଅହା ସେଦିନ କଥା
ଅନ୍ତରେ ଦିଏ ବ୍ୟଥା
ବିରହ-କୋଳେ ବସି
ଝୁରୁଛି ପ୍ରଣୟୀ ତା ।

---

# ରଖିବକି ଟିକେ ?

ରଖିବକି ଟିକେ ?

ବକ୍ଷପରେ ଏ ମୋ ତବ କର ସୁକୋମଳ
ଭଗ୍ନ-ଆଶା, ଅବସାଦେ କେନ୍ଦେ ଥରୁ ଥର
ହୁଏ ମୋ ପଞ୍ଜର ଅସ୍ଥି, କରି ଅନୁଭବ
ଦେବକି ମୋହର ସେହି ବାଞ୍ଛିତ ବିଭବ

ଅଗୋ ପ୍ରିୟ ସଖି ? ଏ ଭୁବନ ପରେ
ଗୃହବାଲୁ ଏକାକୀ ଏ ସନ୍ତପ୍ତ ଅନ୍ତରେ—
ମୂକ ବଧିରର ସମ—ରୁଷ କରି ପ୍ରାଣ—
ଲୌହ ପୁତ୍ତଳିକା ପରି ଅଙ୍ଗ କରି ଠାଣ—

ଦୁର୍ଲ୍ଲଭ ଜୀବନେ କରି ଅନଳ ସଂଯୋଗ
—ସୂକ୍ଷ୍ମ ବାସନାର ପୁଷ୍ଟି ନ କରି ସମ୍ଭୋଗ,
ହୁଏ ନାହିଁ କେବେ ଇଚ୍ଛା । ନାହିଁ ବ୍ୟର୍ଥ ଆଶା
ଦମିବାକୁ ଛଳେ ଦେଲେ ପରାଣ-ପିଆସା

ଅଗୋ ସହଚରି ! ଅନ୍ତର ଏ ବ୍ୟଥା ଭରା
ନିବିଡ଼ ତମସ ଛନ୍ନ, ଗୋଲାପ-ଅଧରା !

ଅଧର-ଗୋଲାପ ତଳୁ ଲଳିତ ସୁବାସ
ବଣ୍ଟାଇ ଦେଉରେ ସଜନି, ତୋର ମଞ୍ଜୀ- ହାସ ।
ମାନସ-ଗଗନ ତାରେ ହୋଇ ଅଲୋକିତ
ଏଡ଼ି ଦେଇ ତମଃରାଶି ହେଉ ପୁଲକିତ ।
ସଫଳ ବାସନା ଯେତେ ମୋର ବାୟୁ ବହେ
ଖରଶ୍ୱାସେ ନାସାରନ୍ଧ୍ରେ, ମନପ୍ରାଣ ଦହେ ।
ତୁମକୁ ସଜନି କରି କେନ୍ଦ୍ର ଅଧିଷ୍ଠାତ୍ରୀ,
ମୁକ୍ତି ଆଶେ ଯେସନ୍ତେ ଧାଏଁ ଦେବ ପାଶେ ଯାତ୍ରୀ
ମୁହୁର୍ମୁହୁ ପ୍ରତିକ୍ଷଣି ଆଶା କଲପନା
ଅଭିଲାଷ, ଗଢା ଭଙ୍ଗା କେତେ ଜଳପନା
ଯେସନ ଦୂରଇ ତବ ଚଉପାଶେ ସନ୍ତ,
ସବୁ ଦୁଃଖ ସବୁ ଗ୍ଲାନି ଅନାୟାସେ ବନ୍ଧ ।
କୋମଳ କରେ ପରଶି ଅଙ୍ଗ ମୋର ତୁଚ୍ଛ
କରିଦିଅ ସ୍ୱଚ୍ଛ, ଅସି ପ୍ରେମ-ବାସେ ଦୃଢ !
ସାଜିଛ ବାସର-ଶେଯ କେତେ ଭଙ୍ଗି ଗଢ଼ି
ଦରଫୁଟା, ସଦ୍ୟଫୁଟା ପୁଣି ଫୁଲକଢ଼ି
ରଚିଛ ମଧୁର ଶଯ୍ୟା କୋମଳୁ କୋମଳ
ଉଠୁଛି ବିବିଧ ଗନ୍ଧ ଶୁଭ୍ର ପରିମଳ,
ସେ କୋମଳ ଶଯ୍ୟାପରେ କୋମଳାଙ୍ଗି ଥରେ
କର ଲୀଳା ବଧୂସୃଷ୍ଟି, ପ୍ରଫୁଲ୍ଲ ଅନ୍ତରେ ।

---

# ରକ୍ତଧାରା

ବ୍ରାହ୍ମଣ ପଲ୍ଲୀର ଶେଷ ଛନଛ ମୁଣ୍ଡରେ
ଥାଏ ତନ୍ତ ଏକ ତାର ଭଙ୍ଗା ନେଫାଘରେ
କୁଟୁମ୍ବ ଭିତରେ ସ୍ତ୍ରୀ କନ୍ୟା ତାର ଦୁଇ
ଆଦର ପାଳିତା କନ୍ୟା ଦରପଣ-ମୁହିଁ
ନାମ ତା ମାଳତୀ, ସେହୁ ବଡ଼ ସୁକୁମାରୀ
ପିଲଟି ଦିନରୁ, ବାପ ମାଆ ଗଲାମାଳି ।
ହାତେ ନାହିଁ ଅଟସ ଖାଇ, ନାହିଁ ଅଟେ ଗୁଳ
ଗରୀବ ମୂଲିଆର ସେ ଦୁଃଖର ସଙ୍ଗାଳି ।
ବଡ଼ଭଲ ଗାଆଁଟିର ଅଗ୍ରର ଚଲନ୍ତି
ଶିକ୍ଷିତ ଗୁଣିକ ପ୍ରାପ୍ତ ସଭିଏ ଯେ ଧନୀ ।
ପ୍ରତିବେଶୀ ବୋଇଲେ ତା ବ୍ରାହ୍ମଣ ଧନୀକ
କୃପାରେ ତାଙ୍କର ସେହୁ ନାହିଁ ମାଗେ ଭିକ ।
ମାଳତୀର ପିଲାଦିନୁ ଧନୀଝିଏ ସାଥୀ
ସୁଖ ସାଥି ମେଲେ ସେହୁ କାଟେ ଦିନ ରାତି ।
ଲଳିତ ସୁନ୍ଦର ରୂପ, ଆଦର ଯେ ଗୁଣ
ମାଳତୀଠାରେ ତା ସବୁ ରହିଛି ଅକ୍ଷୁଣ୍ଣ ।
ରୂପ ଗୁଣେ ଗାଆଁଟିରେ ସକଳେ ତାହାକୁ
ଦେଖନ୍ତି ଖରେ ଭଲବାସି ପଡ଼ିବାକୁ ।
ଆଧୁନିକ ଢଙ୍ଗ ଶିଖେ ପଡ଼େ ଯେଣୁ ପାଠ
ନୋଥ ବସଣୀରେ ନାହିଁ ଯୋଡ଼ାଏ ସେ ନାକ ।

\+ \+ \+ \+ \+

ବୟସ ହେଲା ସତର ଦେଖି ବାପ ମାଆ
ଅବସ୍ଥରେ ପଡ଼ୋଶୀଙ୍କ ଦେଲେ ତାର ବାହା ।
ଅବଶ୍ୟ ଜାମାତା ରୂପେ ସବଳ ସୁନ୍ଦର
ବଡ଼ କାଂଡୁ ମୂର୍ଖ, ସଦା ସ୍ୱଭାବ ତା ଖଳ ।
ଛଟର ଛଟର ସବୁବେଳେ ଘରଟାରେ
ଦଶନ୍ଧକାଠି ସତେକି ଦେଖାଏ ଅଡ଼ାରେ ।
କବାଟ ପଥରଖୁଣ୍ଟି ଦେଖି କେ ଦାଣ୍ଡରୁ
ଭାବିବେ ଏ ଅଥଳବାଲ, ମାତରଂ ଭିତରୁ
ମିଳେ ଯାହା ପରିଚୟ କହୁ ଲାଭ କଷ,
ଦେଖି ଯା ମାଲତୀ ଖୋଜେ ସାହା ଦଶଦଶ ।
ଯାଯୋର ଦଅନ୍ତା ଦୁଃଖ ନ ଥିଲେ ତା ଧନ
ହୋଇଥାନ୍ତା ଗୁଣୀ ଯେବେ ତା ଜୀବଜୀବନ ।
ଅଛୁ ଯେ ଗୁଣ ବର୍ଣ୍ଣିବା ନୁହେ ସେ ଯେ କଥା
କଥା ପଦପଦକରେ ଫଟାଫଟି ମଥା ।
ଚମକ ଥିଲା ଯେ ଲାଗି ପ୍ରଥମେ ମାଲତୀ
ଜୀବନ ଲାଗି ତା ଛତ ଦେଲା କେ କରଛି;
ଅସିବାର ଦୁଇ ମାସ ହୋଇଛି କି ନାହିଁ
ଦେଖେ ସ୍ୱାମୀ-ନାଲିଆଖି ପାନଟକେ ପାଇଁ ।
ତେଲ ଥିଲେ ଲୁଣ ନାହିଁ, ଗୁଅ ଥିଲେ ପାନ
ନାହିଁ ଥାଏ, ଦୁଃଖେ ତାର କାଟେ ଦନମାନ ।
ଅକାମୀ ସ୍ୱାମୀରେ ଖାଲି ଶୋଇବାର ବନା ।
ଦେଖେନି ସେ ଅନ କିଛି, ଦନୁ ଦନ ଦୀନା
ଉଛୁଳାଏ ନୟନରୁ ନୀରବ ଝରଣା,
ବେଳୁବେଳ ଗଲା ଶୁଣି ଚମ୍ପକ-ବରଣା ।

'ହିଁ' ଉମଙ୍ଗଥିଲା ଯେ ଲାଗି ପ୍ରଥମେ ମାଲତୀ
ଏହୁ ତାହା, ବନ୍ଧୁ ଏକ ଦିନେ ତାର କଡ
ପ୍ରବେଶନ୍ତେ ଆସି ନିଜ ମର୍ଯ୍ୟାଦା ଦେଖାଇ
'ଅଣ ପାନ' ଖଣ୍ଡେ ନିଜ ପତ୍ନୀକେ ଡ଼କାଇ ।
ଦୁଃଖିନୀ ଆଣିବ କାହୁଁ ? ସ୍ୱାମୀର ଗୋଇନ୍ତ
ଭୁକ୍ତା ପାଉଁଶଗଦାଠା, ନାହିଁ ଇଷ୍ଟ ରକ୍ତ ।
ବଦାସ୍ପୃ ବନ୍ଧୁ ଶେଷରେ ଆସି ଗୋପାଳିଅ
ଲୁଟିଲା, "ଅଟେ ପାଷାଣ୍ଡି ! ଶର ଚୋର ହାଅ
ଶୋଷିବ ରକତ, ବେଗେ ଯାଅ ଘରୁ ଅଛି
ଚୋପଡ଼ି ଅଛନ୍ତି କେତେ ନାହିଁ ତୋତେ ଲଜ୍ଜା ।"
କହିଲାର ବଧାଇଲା ଦୁମୁ ଦୁମୁ ବଧା
କହନ୍ତ କଥାରେ ଯାହା କରିଦେବ ସିଧା ।
ଦୋଷ କାସ ରହିଲା ବା ମାଲତୀର ଏଥେ
ବୁଝେ କିଏ ? ଦୁଃଖିନୀଠା ବାହୁନିଲା କେତେ ।
ଗୋଲାପୀ ଅଧର ତାର ହୋଇଲା ପାଣ୍ଡୁର
ନୟନ ସରାଗ-ରଂଗ ଲୋତକରେ ଦୂର,
କୁସୁମପ୍ରତିମ ଅଙ୍ଗ, ଯୌବନ ସରାଗ,
ନିଠୁର ଘଟର ଲାଗି ବିଷାଦର ଦାଗ
ପଡ଼ିଲା ବିରାଠ ଏକ ସେଥେ ମାଲତୀର
ବଳିଲା ଦାରୁଣ କଷ୍ଟ କୋମଳ ଶରୀର ।

ଗାଧୁଆ ଭୂଠରେ, ବାରି ଅମ୍ବଗଛ ପାଖେ
କେତେ ସେ ବକଳେ ବସି ବଧାଘାତେ ଡ଼ାକେ !
ଫଳେ ସ୍ତନଅଧେ ଦପଦ୍ୱରେ କେ ତେବାର
ବାହୁନେ ବୋଉଟେ ଗୀ ହେଲି ବଡ଼ ନାରଖାର ।

ପଡ଼େ ଯେତେବେଳେ ତାର କୋମଳ ପରଶେ
ନିଜ ଲେଖା କବିତାଟି ଲଳିତ ସୁତାନେ
ଘୂରିଯାଏ ମଥା ତାର, ଦିଶଇ ଅନ୍ଧାର
ଭାବେ ସେ, "ଅନ୍ଧ-ମିଳନ କାହିଁ ବିଧାତାର !"
ପିଲାଦିନେ ପାଠଶାଳେ ସାଥିମେଳେ ହସି
ଭାଷିଥିଲା ଅନୁରୂପ ପ୍ରଣୟୀରେ ବରି
ଲେଖିବ କବିତା, ହେବ ସୁଖ ତା ସଂସାର,
ମାତ୍ର ଆଜି ହୃଦରେ ଦୁଃଖେଣ ନେଇ ଘାରଧାରେ ।

× × ×

ଗୋପାଳଅ !— ନାହିଁ ତାର ଅନ୍ୟ କାମ କିଛି
କେବଳ ଜାଲପୋଲୁହ ଖଣ୍ଡେ ସାଇତିଛି ।
ନଈ ଗାଆଁ ପାଖେ, ମାଛ ଧରେ ସଞ୍ଜବେଳେ,
କେଉଁଠି ସିଙ୍ଗିର ଛଡ଼ା ଆଉ କେବେ ହେଲେ
ଧରିନ ସେ ଅନ୍ୟ ମାଛ, ତହିଁରେ ବଗୁଟରେ
ପରିଶ୍ରମୀ ସେହୁ, କିବା ଅଭାବ ତାହାରେ ।
ପୋଲୁହକାଠି ଖଣ୍ଡିକ ସଜାଡ଼ୁ ଦିନେ ସେ
କଳ୍ପନାରେ ମୁଗ୍ଧ ହୋଇ ସାଉଁଳି ତା କେଶେ
ମାଳତୀକୁ କହେ, "ଲକ୍ଷ୍ମୀ ପୋରଷ ବାଛିଥା,
ହାଟେଁ ମୁଁ ଆଣିବ ଆଜ ଶେଉଲ ଗଡ଼ଣା,
ଟ ଝୋଲ ହେବ ଗଂଡ଼ି, ମୁଣ୍ଡ ଲଞ୍ଜ ଭଜା ହେବ,
'ଆମପିଲଙ୍କିମା' ବେଣୀ ସ୍ୱଗ ନାହିଁ ହେବ ।"

ଛଅଗୋଟି ମାସ ପେଣ୍ଟ ହୋଇଛି ଅତୀତ
ଶୀତଳ ହେଲାଣି ପୂର୍ବ ଶରୀର ତାପିତ,

ଭାଷିଲା ମାଲତୀ ତେଣୁ ସ୍ୱାମୀରେ ନରମେ,
"ହେବ ବୋଧେ ବେଶୀ ରାତି ଅଛୁ ଅଛୁ ଭ୍ରମେ;
ଉଠିଲେ ନିଦରୁ ସତେ ମୁଁ ରାତିଅଧରେ
ଢେର ପାରିବନି ଦୂରଠାଅ, ଠାଅଭରେ
ଦେଖିବନି ତ ଅଶ୍ୱ-ଖୁର ? ହେବ କାଲି ଅଧେ",
ଶୁଣୁ ଶୁଣୁ ପରଚଣ୍ଡ ଗୋପାଳଅ ରଢେ,
"ନାହିଁ, ନାହିଁ, ହେବ ସବୁ ରାତିରେ ଅଙ୍କର
ସଜ ଝୁସୁବାଇ ଅଜ ଥାଏ କି ବାସିର ?"
"ନାହିଁ, ପାରିବନି କରି' ମାଲତୀ ଭାଷିଲା;
ଅତକୋଧେ ଗୋପାଳଅ ଦାନ୍ତ କାମୁଡ଼ିଲା
କହିଲା, "ତୁ ପାରିବୁନି ? ତୋ ବାପ କରିବ
ନୋହିଲେ ତୋ ପିଠି ମଥା ପାହାର ବସିବ ।"

'ବୋଉ, ବୋଉ' କେମିତ ଲୋ ବଳିଲା ତୋ ସତ,
ବାପା ହେ ଗୃହିଁଲ କେତେ ତୁମର ଉକତ
ବନ୍ଧୁଛ ଯେ ନବଜାତ ଶଶିରେ ମୋହର
ଦେବାକୁ ଏ ଛନଅନ୍ତ ଅପୁତ ବସ୍ତ୍ରର ?"
ବାହୁନ ସ୍ତ୍ରୀ ଉଚ୍ଚସ୍ୱରେ ଦୁଃଖିନୀ ମାଲତୀ
ପିଟିଦେଲା ଭୂମିପରେ ମଥା ସେ ଝଟତି ।
ଛୁଟିଲା ଯେବେ ଶୋଣିତ ଶିରୁ ଖରତର
ନାହିଁ ନ ଗୋପାଳଅର ସେ ଅଡ଼େ ନଜର,
ଶୁଣି 'ଛନ-ଅନ୍ତ' ତାର ବଢିଗଲା ରାଗ
'ହଇ ଲୋ, ହଇ ଲୋ, କହୁ ଦେଦେ ତାର ଦାଗ
ଅଙ୍କିଗଲା ପୋଡ଼ୁହର କାଠିଖଣ୍ଡେ ଧରି
ପଡ଼ିଗଲା ଭୂମେ ମାଲତୀ ଯେ ଥରି' ଥରି ।

ପଡ଼ଲେ ପ୍ରତିବେଶୀ ଶୁଣି ଏ ଚିତ୍କାର
କେ କହେ ଏ କଲଗୋଳ ହେଲା କେଉଁଠାରୁ ?
ଜାଣି ଗୋପାଳଅ ଘରେ ପଶିଲେ ସକଳେ
ଦେଖିଲେ ସରବେ ଯାହା ମାଳତୀ ଦେହରେ
ହୋଇଲେ ଚକିତ, ଦେହ ଗୋଟା ସାରା ଫାଟି
ବହୁଛି ରକତଧାର, ଭେଦଯାଏ ମାଟି ।
କେ କହେ 'ମଲା ଏଇଟା, ବସାଉଛି ହାଟ
ମାମୁଁ ମାଇଁ ଦୁଇ ପ୍ରାଣୀ ଲାଗେ କାଠ କାଠ,
କେମିତି ରହିବେ ଲକ୍ଷ୍ମୀ, ଧରମ ସହିବ
ମାରେ କୁଳବୋହୂଟାକୁ ? ପଛକୁ ବୁଝିବ !'
ପଡ଼ଶାଏ କହି ନାନା କଥା ଗଲେ ଫେରି
ଜମିଦାରେ ଜଣାଇବା ନାହିଁ କଲେ ଡେରି ।
+ + +
ଅଖି ଠାରୁଠାରୁ ଜମିଦାର ଓ ଗୁମାସ୍ତା
ଖୋଲିଗଲେ ଧନଲାଗି ଯେଣୁ ଏକ ରାସ୍ତା ।
ବର୍ଷେ ହେଲା ଦେଖା ନାହିଁ ଉପର ପଇସା
ପରଜା ଉପରେ ତେଣୁ ହୁଏ ବଡ଼ ଈର୍ଷ୍ୟା ।
ବରଷକ ତଳେ କିଏ କରିଥିଲା ମେଳା
ପାପଗର୍ଭ ହେଲା ଯା ଦୁଆରେ ମେଳା ହେଲା;
ସେଇଥରେ ମିଳିଥିଲା ଛରଶହି ଟଙ୍କା
ସେହିନୁ ପଇସା-ରାସ୍ତା ହୋଇଥିଲା ବଙ୍କା ।
ଆଜ ପୁଣି ପ୍ରାଣେ ବହେ ଅନନ୍ଦ-ମଳୟ
ମୁହୂର୍ତ୍ତିଟା ସେହି ହେଲା ସୁଖ ଶାନ୍ତିମୟ ।
ଠାରିଲା ଅଖି ଅକାର ଘରର ଚୁଁ'ଙ୍କ
'ଅଣ, ଅଉ ଅଣ' ଅମେ ଲୋଡ଼ୁ ନୂଆ ସଙ୍ଗ ।

ପଠାଣ ପିଅଦା ସଦା ରହୁଛ [illegible]
ଜମିଦାରଙ୍କ ଆଦେଶ ମଣି ଶିରୋବରୁ
ମଣିଷଙ୍କୁ ମାଛି ମଣି ପଦେ ଯାଏଁ ବିକ୍ଳ ।
ଘୃଣାରେ ତାହାର ଦେବ ନାହିଁ [illegible]
ଇଙ୍ଗିତେ ପ୍ରଭୁର ଗଲ ଏକା ନିଶ୍ୱାସକେ
ଅଣିଲ ଓଠାର ବଜରଙ୍ଗେ ଗୋପାଳକେ ।
ଗାଆଁ ବାଲ ବୃଦ୍ଧଜଣ କାନକୁହା ସେଥ
ଜମିଦାରସହ ବସି ହେଲେ ପଞ୍ଚାଏତ ।
ମାମଲତେ ପଦ୍ମାସନେ ଜମିଦାର ବସି
କଥାସହ ଝୁଲ୍ପାନ୍ତ ଝୀଣହାସ ହସି,
ଯଥା ସେ ବାସବ ଲୋକମତେ ସରଗରେ
କିବା ମର୍ତ୍ତ୍ୟେ ଦୋଳ-ଦେବ ଦୋଳବେଦୀ ପରେ ।

ହାୟରେ ଜଗତ ! ତେଲ ବିନା ଯା'ର ବାଲ
ଜଟେ଼ ଫୁରୁ ଫୁରୁ, ଶିରୁ ବହୁପଢ଼େ ଝାଳ
ହାଡ଼ଭଙ୍ଗାଶ୍ରମେ । ଅଣୁ ଲୁତେନ ବାସେ ଯେ
ବଲମାଟି ଦେହେ ଘଷେ ଛଇଲ ରୂପେ ଯେ,
ଯାର କୁଲବଧୂ ପିନ୍ଧେ କଂସା-ଆଭରଣ
ଧୂଳଗଦାପରେ ଯେହ୍ନୁ ରଚଇ ସ୍ୱପ୍ନ,
ତାଆର ପାଖରେ ତୋର ଗରବ-ଗଞ୍ଜଣା
ରକତେ ତାଆର କରୁ ତୋ ବ୍ରତ-ପାରଣା !

'ହଁ, ହଁ, ଏଣୁ ତେଣୁ ପଡ଼ ପାଞ୍ଚକଥା
ଘୂରିଲା ସଭିଙ୍କ ଗୋପାଳଆ ଲାଗି ମଥା ।

ହସି ହସି ଜମିଦାରେ ଭାଷିଲେ ଚାହାରେ ।
"ହଇରେ ଗୋପାଳ, ତୁହି ଏଡେ କଲନାରେ
ଭାସିଗଲୁ ହୋଇ ମୁଗ୍ଧ ? ମାଛ ନାହିଁ ହସ୍ତ
ଖାଇ ପୋଲୁହ କାଠି ସଜଡ଼ାରେ ଗତ
ବଡ଼ମାଛ ଅଣିବୁ ତୁ କେସନେ ଜାଣିଲୁ
'ବାଛିଥା ବେଶର' ବୋଲି ଜୋରେ ଅଦେଶିଲୁ ?
ସେତେକ କହି ମାତେ ଯାଇଥାନ୍ତୁ ଭଲରେ
ଏଡେ ମୂର୍ଖ, ମାଡ଼ଗୋଳ କଲୁ ମିଛଟାରେ ।
ପଡ଼ିରେ ତୋ ଜାଣିବାରେ ନାହିଁ କଛ ଦୋଷ
ଅକାରଣେ ପ୍ରହାରିଲୁ ବହି ମୂର୍ଖ ଶ୍ରେଷ୍ଠ,
ମାରୁ ମାରୁ ଜୀବନରେ ଯାଇଥାନ୍ତା ମରି !
ପରଜା ପାଳିବା ମୋର ସ୍ୱମହାଜା ପରି
ଦୃଢବ୍ରତ ଯେଣୁ, ତୋର ଏହି ଅପରାଧ
ତଥିଲ ପଚଶିଟଙ୍କା ଜୋରିମାନା ଦେ ।"
ପଞ୍ଚାୟତଙ୍କର ସେହି କଥା ଦୃଢହେଲା
ମୀମାଂସାରେ ଷୋଳଟଙ୍କା ଦେବାହିଁ ତ ହେଲା
ଗୋପାଳଅ ତହିଁ କାଂତୁ ହିଂଗାଉନ ମୁଣ୍ଡ
ପ୍ରତିବାଦ କରିବାରେ ଫିଟାଇନ ତୁଣ୍ଡ
ହେଉ ଦେଖି ପିଅଦାଟା ଭଡ଼ିଲା କଡ଼ାରେ
ଦେ ଅଣି ଟଙ୍କା ଶୀଘ୍ର ମାଡ଼ମୁନ୍ନାରେ ।
ପ୍ରଚଣ୍ଡରାଗେ ସେଠାରୁ ଗଲା ଗୋପାଳଅ
ପେଟଭିତରେ ସତେକ ଜଳେ ତାର ନିଅଁ !
ବାଟେ ଯାଉଁ ଭାବିଲା ସେ ଏ କିସ ବିଚାର ?
ମୁଁ ମାଇଲି ମୋର ଘରେ କପା ଜମିଦାର

ଲଗାଏ ଘଣ୍ଟାଚକଟା, ଘୁରାଏ ତା ମଥା
ଦେବ କପାଁ ଟଙ୍କା ଯା'ଙ୍କୁ, ଅଳ୍ପ କପ କଥା
ରହ ଏଥେ ପୁଣି ? ଘର କରିଲ ଉତ୍ତାରୁ
ନଷ୍ଟଏ ବା କେଉଁ କଥା ? ଆଣି କେଉଁଠାରୁ
ଦେବ ଷୋଳଟଙ୍କା ? ଜମିଦାରଙ୍କ ଭୟରେ
ଭାବିଲ ସେ 'ଦେବ ନଷ୍ଟେ' ଶଙ୍କା ହୃଦୟରେ ।

ଟଙ୍କା, ଟଙ୍କା, ହୋଇ ତାର ତୁଟିଗଲା ବଳ
କ୍ଷଣକରେ, ସବୁ ତାକୁ ଦଶିଲା ଜଙ୍ଗଲ ।
ଅବୁଝା ସେ କହିଲାତ ଭାବି କଥା କେତେ
କରୁଅଛି ମାଇକିନାଗଣ୍ଡ କାଣ୍ଡ ଏତେ ।
କହୁ କହୁ ସଗ ନଅଁ ପରେ ଦାଉଦାଉ
ଜଳିଯାଏ ଦେହସାରା ହୋଇ ହାଉହାଉ ।

× × ×

ଉଚ୍ଛୃଙ୍ଖଳା ଭାବନାରେ ମାଲତୀ ବରୁଷି
ସେଦେ ତାର ଚିଲ୍ଦନ କଥା ମନେ ଭଳି ।
ମାନସେ ତାହାର ଲମିଷକେ କେତେ କଥା
ଆଣାଦେଇ ଅଙ୍କିଗଲା ମର୍ମଭେଦୀ ବ୍ୟଥା ।
ଆବଦ୍ଧ ପିଞ୍ଜରା ପକ୍ଷୀ ଯଥା କଲବଲ
ମରପିଣ୍ଡେ ହେଲା ତାର ଜୀବାତ୍ମା ଅମର ।

ଉପସ୍ଥିତ ଏ ସମୟେ ରାଗୀ ଗୋପାଳଅ
ଜୁଆଳି ଧଇଲା ହାତେ ଫୁଲାଇ ତା ହୁଅ ।
ଗମ ଗମ ବନ୍ଧେ ଝାଳ, ମୁହଁ ଦଶେ ନାଳ,
ଭାବିଲା ମାଲତୀ କିବା ଅଛି ସଗ କାଳ ।

ଶୁଣିଲା ଓଠରୁ ମେଲି ହସର ଛଳନା
ରହିଲା ମାଳତୀ ଗୃହୁ ପଙ୍କଜ-ବଦନା,
କେଜାଣିବା ସ୍ୱାମୀ ତାର ହୋଇ ବମୋହିତ
ଭୁଲି ସବୁ, ବୁଡ଼ାଇବ ପ୍ରେମ-ନୀରେ ଚିତ୍ତ !

ହେଲେହେଁ କୁପିତା ଶୁଣି କଟୁ କଥାମାନ
ତଥାପି ସ୍ୱାମୀରେ ମଣେ ଦେବତା ସେ ଜ୍ଞାନ,
ମାଡ଼ଖାଇ ପିଠି ତାର ଗଲେ ସୁଦ୍ଧା ଫାଟି
ସ୍ୱାମୀ ପ୍ରତି ଅନୁଚିତ ମେଲାଇବା ପାଟି,
କାହିଁକି ସରଳା ଏହା ଭାବେ ତା ମନର
ସେହି ଏକା ଜାଣେ, କିଏ ଜାଣିବ ଅପର ?
ଏତେ ଗାଳିମାଡ଼େ ଓଲଟିନି କୁବାକ୍ୟରେ
ଭାଷିଥିଲା 'ଜ୍ଞାନ-ଅନ୍ଧ' ତାର ଜୀବନରେ
ଦନେ ବୋଲି, ସେଥିଲାଗି ଅବସର ବାସେ
ଥରି ଉଠେ ପ୍ରାଣ ତାର ଦାରୁଣ ପରାସେ ।

ତଥାପି ତାହାର ମୁକ୍ତି ନାହିଁଟି ଜଗତେ
ସହିବ କେ ଜାଣି ଯେହ୍ନେ ଅଛି ଶ୍ୱାନମତେ,
ଅବା ସେ ସହିବ ଯାର ପିଣ୍ଡେ ନାହିଁ ପ୍ରାଣ
କିବା ଯା ଶରୀର ଲୁହା କାଠପରି ଠାଣ ।
ଭାବିଲା ମାଳତୀ ସିନା ଭୁଲାଇବ ବୋଲି
ମାତ୍ର ସ୍ୱାମୀ ଆସେ ତାର କୁଆଳକୁ ତୋଳି

କଲା ପାଟି ଗୋପାଳିଆ ଏତେ ବଦମାସୀ
ଛୁହୁ ଅଲେ, ରଖ ତୋତେ କିଏ ଗାଁଅବାସୀ !

ହାଣିଲବେ ପଦେ ଅଧେ କହିଦେଲି ତୋତେ
ଜଣାଇଲୁ ଜମିଦାରେ, ଏଡ଼େ ସ୍ପର୍ଦ୍ଧା ମୋତେ
ଶିଖିଲୁ ତୁ ? କହିଲା ତ ଡାକ ଛୁଆଙ୍କର
ବସାଇଲା ଶୁଦ୍ଧମନଃ ମାଲତୀର ଶିର ।
କି ଦୋଷ ତାହାର ? ସହି ଦାରୁଣ ଆଘାତ
ପଡ଼ିଗଲା ଭୂମିପରେ ମେଲି ଦୁଇହାତ,
ଛୁଟିଲା ତା ଶିରୁ ଖରେ ରକତର ଧାର
ଫିଟିଲା ନାହିଁ ଯେ ଆଉ ଆଖିପତାଦ୍ୱାର ।



## ଅତୃପ୍ତ ବାସନା



ତୁମେ ନ ଦେଲ କିପାଇଁ ବାସନା
ଯେବେ ଶେଫାଳିକା ହୋଇ ଫୁଟିଲି
କିପାଁ ନ ଢାଳିଲ ମୃଦୁ ଜୋଛନା
ଯେବେ ପୁନେଇଁ ଆକାଶେ ଉଠିଲି ?
ତୁମେ ଅଷାଢ଼ ବାଦଲେ ବଦ୍ୱର
ନ ଢାଳିଲ ଯେଣୁ ବାରି ଗୋ
ହୃଦ-କ୍ଷେତ୍ରର ଆଶା-ଶସ୍ୟ ମୋ
ତେଣୁ ଯାଉଛି ତପନେ ଜଳି ଗୋ ।
ମୁଁ ତ ଆଶାୟୀ ହୋଇ ରହିଁଛି
ଯେବେ ଆଶା ଦେଲ ମୋର ପରାଣେ
ମୁହିଁ ବୀଣା ହୋଇ ଖାଲି ପଡ଼ିଛି
ତୁମେ ବାଜଉ ନାହିଁ ସୁତାନେ ।

ମୁହିଁ ଖାଲି ସରୋବର, ତୁମେ ଗୋ
ତହିଁ ଫୁଟିଉଠ ହୋଇ ପଙ୍କଜ
ମୁଁ ତ ତୁଚ୍ଛା ପଥରଟା ପଡିଛି
ତୁମେ ଅସ ଗୋ ସରଳ ସହଜ ।



## ରାମ ମାଆ



ରାମ ମାଆ ବଡ 'ଖପର କାଣ୍ଡେଇ'
ଲଗାଏ କଳି
ଘରେ ଘରେ ବୁଲି, ସାଇପଡିଶାଏ
ହୁଅନ୍ତି ଚଳି ।
କେଉଁଦିନ ଯଦି କଳି କରିବାକୁ
ନ ପାଏ ବାଟ
କଣ୍ଟାବୁଦାପରେ ଲଗାଇ ଲୁଗାକୁ
କରଇ ନାଟ ।
ଭଲ ମନ୍ଦେ କିବା ଦଅଁଦେଉଳକୁ
ଯଦି କେ ଯାଏ
ସାଥିରେ ତାହାକୁ ନେବା ପାଇଁ କେହି
ଭଲ ନ ପାଏ ।
ମନେ ଅଛି ଦିନେ ପିଲାବେଳେ ମୁହିଁ
ତାରି ସାଥିରେ
ବୋଉକୁ କହିଣ ଢୋଟାମେଳଣକୁ
ଗଲି ସାଙ୍ଗରେ ।

କହିଲି ମୁଁ ତାକୁ ରାମ ମାଆ ଖୁଡ଼ି,
କଣି ଦେ ମୋତେ
ଦଶ ପଇସାରେ ପାରୁଦଅ କାଠ
କଲମ ଗୋଟେ ।
ମୋ କଥାକୁ ଶୁଣି ବସିଗଲା ସେତୁ
ପାଟଗ୍ର ପାଖେ
'ଦେରେ କଲମ' ବୋଲି ବଡ଼ଭାନେ
ତାହାକୁ ଡ଼ାକେ ।
ବାଛି ବାଛି ଦେଲା ପାଟଗ୍ର କଲମ
ଦୁଇଟି ଭଲ
ରାମ ମାଆ ଚକାମଣ୍ଡି ପକାଇ
ଧରି ଖଣ୍ଡର।
ଏପାଖ ସେପାଖ ମୁନ ଦେଖି କସ
ଭାବ ମନରେ।
କହିଲା କଲମ ମୁନଡ ଖରାପ
ଅଉ ଦଅନ୍ତୁ କି?
ସେବେଲେ ପାଟଗ୍ର କହିଲା ଆନକୁ
ଏ ମାଛିପିଠା।
ପାଠପଢି ବଡ଼ ଚତୁର ହୋଇଚ
ଟକେ ଦେଖିଥା ।
ରାମମାଆ ଝୁଡ଼ୀ ପାଠ ପଢିଅଛୁ !—
ଶୁଣିଲି ଖଣି
ହସି ହସି ସିଠୁ ପଳାଇ ଅଇଲି
କଲମ କଣି ।

ଏମିତ ଚତୁର୍ଥୀ ମିଛଟାରେ ହାତ
ହଲେଇ ବୁଲେ
ସଭିଏ ଜାଣନ୍ତି ବଦମାସୀ ଗୁଣ
ଥାଏ ତାହାରେ ।
କଳ କଲେ ତାକୁ ସଭିଏ ଡରନ୍ତି
ଗାଆଁଟାଯାକ
ବୁଢ଼ା ଟୋକା କେହୁ ଡ଼ର ପଶନ୍ତିନି
ତାହାର ପାଖ ।
'ପଦବୋଉ' ଦିନେ କଳିରେ କହିଲା
ମଲା ଡ଼ାଆଣି !
ପୁଅ ଗେରସ୍ତକୁ ଖାଇ ବୋଲଉଛୁ
ଗାଦିରେ ରାଣୀ ?
ଡ଼ାଆଣି, ରାତିରେ ପଢ଼ୁଆରେ ଚରୁ
ନ ଜାଣେ କିଏ;
ଏତିକିଟିବେଳରୁ ତାଳି ମାରିଦେଲେ
ଟୋକା ସଭିଏ ।
ଏତେ ମର୍ମକଥା ଥିଲା ବୋଲି କା'କୁ
ନ ଥିଲା ଜଣା
ରାମ ମାଆର ଯେ ସରିଗଲା ସବୁ
ଘରକରଣା ।
ପଦବୋଉ ଯେବେ ମିଛରେ କହିଲା
ତଥାପି ତାକୁ
ବାଧିଗଲା ବଡ଼େ ମୁହିଁକୁ ଫୁଲାଇ
ଗଲା ବସାକୁ ।

ତହୁଁ ଅରବିନ କେହି ନ ଦେଖିଲେ
ତାକୁ ଗାଁରେ।
କେତେ କଥା କଏ ବରୁର କରିଲେ
ତାଅ ନାଆଁରେ।
ପୁଣି ମକଦମା ତାରବରେ ଯାଇ-
ଥିଲା ଧନଅ
କହିଲ, କୋଉଠି ବେଶ୍ୟାଦ୍ୱାରେ ଥିଲା
ହୋଇ ସେ ଠିଅ।
ସମସ୍ତେ କହିଲେ ଗଲା ଭଲ ହେଲା
ଛତରଖାଇ,
ସ୍ୱଭଦନ ଖାଲି କଲ ତାର ପେଷା
ମଲା ଯା ନାହିଁ!
ସମମାଅ କନ୍ତୁ ନାହିଁ ଥିଲା ରହି
ବେଶ୍ୟା ଗୃହରେ
ଥିଲା ମାଏ ସେହି ଚୁଡ଼ଙ୍ଗସାହିର
ଅଲଗା ଘରେ।
ଦନେ ସେ ଦେଖିଲା ବଡ଼ଦେଉଳର
ସିଂହଦୁଆରେ
ହୁଏ ସଭା ଏକ, ଅନନ୍ଦେ ବସିଲା
ଯାଇ ସେଠାରେ।
'ସ୍ତ୍ରୀ-ସ୍ୱାଧୀନତା' ବଷୟେ ଲଗିଛ
ଅଭଭାଷଣ
ଶୁଣି ସମ ମାଅ ଦେହ ଭଲସାଇ
କରିଲା ପଣ

ବରିବ ମୁଁ ସ୍ୱାମୀ, ଦେଖିବ ବଦନ
ପୂଅ ଝିଅର
ଗାଉଁଲି କଥାରେ ମୁଖ ଛାଡ଼ ଦେବ
ଏ ଜୀବନର ?
(ସତେ) ଚକ୍ଷୁଥାଇ ଅନ୍ଧ ହୋଇ ଏ ମାନବ
କିସ ନ କରେ
ଜୀବନକୁ ମାଡ଼ି ମକଚି ରଖନ୍ତି
· ଅନ୍ଧାର ଘରେ !
ଜୀବନ ବିକାଶ ଅନ୍ୱେକ ପାଇଁ ଏ
ପ୍ରାଣ ବିକଳ
ନ ହୁଅଇ କେବେ ? ବୁଝେନା ପୁରାଣ—
ବିଶ୍ୱାସ ନର ।
ପୁରାଣକୁ ମିଛେ ସାକ୍ଷୀ ଦିଅନ୍ତି ସେ
ନାକକୁ ଠେକି
କୋଉ ପୁରାଣରେ ପଢିଛନ୍ତି ସେତ
କହନ୍ତୁ ଦେଖି ?
ପୁରାଣକୁ ପଢ଼ି କହିବ ଯେ ଦୃଢ଼େ
ମୋ ଅଗେ କଥା
ମନେ ହୁଏ ମିଛ କଥା ଶୁଣି ତାର
ପିଟିବ ମଥା ।
ସ୍ୱାଧୀନତା ସୁଖ-ସମ୍ଭୋଗ-ବିଳାସ -
ଅଖଣ୍ଡ ତଳେ
ଯାଇଅଛି ସତ୍ୟ ତ୍ରେତୟା ଦ୍ୱାପର
ଶୁଭମଙ୍ଗଳେ,

ଯେଉଁ କଥା ଥିଲ ସପନ ଲାଗୁଛି
ଶୋଭୁଛି ନର
ଥିଲ କିନ୍ତୁ ତାହା ପ୍ରଧାନ ବିଷୟ
ତିନି ଯୁଗର ।
ଏହି କଳିଯୁଗେ ସେ ସମ୍ପଦ କିନ୍ତୁ
ହୋଇଛି ନଷ୍ଟ
ପାଇ ମହରଛା ମୁସଲମାନରେ
ବଢ଼ିଲ କଷ୍ଟ
ଭୁଲିଲେ ମାନବ ଅଧ୍ୟାତ୍ମରେ ତାଙ୍କ
ଧର୍ମ-କରମ
ଲୁଚିଲ କବାଟକଣେ ନୁଅବଢ଼ୁ
ଲଗି ସରମ
ଧର୍ମ ନଷ୍ଟ ଭୟେ ଘରେ ଘରେ ବନ୍ଧୁ
ଦେଇ ଥାପିଲେ
ଶକ୍ତି ନାହିଁ ଦେଖି କ୍ଷମାଶୀଳରୂପେ
'ନାମ' ଜପିଲେ ।
ହେଲ ଶେଷ ସଭା, ଗ୍ରାମ ମାଆ ନାହିଁ—
ହୁଲାଟି ପରି
ଅସଭି ଗରମ ମଥାରେ ବନ୍ଧୁଛ
କଳନା କରି ।
ଭାଷେ ଉଚ୍ଚସ୍ୱରେ ପାଗଲୀଟା ପରି
ବଡ଼ ଦାଣ୍ଡରେ
ହେବ ସରଗର ଶଚୀ ଉରବଶୀ
ମର୍ତ୍ତ୍ୟଧାମରେ,
ହେବ ଦ୍ରୁପଦା, କୁନ୍ତୀ, ମନ୍ଦୋଦରୀ,
ଅହଲ୍ୟା, ତାରା

ଯୁଗ ପାଇଁ ପ୍ରାଣ-ବାସ ଛୁଟାଇବ
ଭୃଙ୍ଗି ଏ ବାର ।
ବୋଲବ ରାଧିକା ଦେବ ଗୋପପୁର—
ଶତ ରମଣୀ
ଗୋପନେ ଗୃହିଁବ ରସରାଜଙ୍କର
ପ୍ରୀତି-ସରଣୀ ।
ଜୀବନ-କୁସୁମ ଫୁଟାଇ ତା ବାସ
ଛୁଟାଇ ଦେବ
ଅମୂଲ୍ୟ ଜୀବନ ଭୁଚ୍ଛାଟାରେ ଦୁଃଖ-
ପଥରେ ନେବ ?
ମାଡ଼ ମକଚ ମୁଁ ବାଜସେ ଭଣିବ
କାହିଁ ଜୀବନ
ପଶୁପର ପେଟ ପାଳିବାକୁ ଖାଲି
ବିଶ୍ୱ-ଧରମ ?
ବିଶ୍ୱ-କଲ୍ୟାଣ କି ଦରଫୁଟା ମଲ୍ଲି
ମକଚ ଦେବା
ବିଶ୍ୱର ମଙ୍ଗଳ ଭୁଷାନଲେ ପ୍ରାଣ
ସମର୍ପି ଦେବା ?
ବଞ୍ଚିଥିବ ବହୁ କଳପନା ନେଇ
ବଢ଼େ ଏ ଜୀବ
'ଜୀବନରେ ଥାଇ ମଲାପରି' କାହିଁ
ଶେଷେ ଶୋଇବ ?
ଭବ ବ୍ରମ ମାଆ ଦଉଡ଼ିଲା ତାର
ଭଡ଼ା ଘରକୁ
କାନ୍ଦଡାର ଶୋଇପଡ଼ିଲା ଭୂଇଁରେ
ମାଡ଼ ମୁହଁକୁ ।

'ସମମାଅ' ଶୁଣି ଭାବୁଥିବେ କେତେକ
ମନରେ କ୍ଲେଶ
(କନ୍ତୁ) ନୁହେ ଅସୁନ୍ଦରୀ ବୟସ ତାହାର
ହେବ ପଚିଶ ।
କଳ କରିବାଟା ନୁହେ କନ୍ତୁ ତାର
ନିଜ ସ୍ୱଭାବ
ଏକା ସେ ଚଳିବ କିମିତି ? ଦେଖାଏ
ଏରୂପ ଭାବ,
ନାହିଁ କେହି ତାର ଏକାକିନୀ ସେନ୍ତୁ
ଗାଆଁ ଭିତରେ
'ଶିଶୁ-କାନ୍ଦ' ପରି ଧିଏ ତାକୁ କଳ
ବଳ ଦେହରେ ।
ଫୁଟି ଅସୁଥିବା ନବା ସଜଫୁଟା
ନୁହେ ସେ ସତ
କନ୍ତୁ ତା ଯୌବନେ ଛଏଁ ଛଏଁ ହୁଏ
ଯୁବକ ନତ ।
ଦଶଦନ ପରେ ଦେଖିଲେ ଗାଆଁରେ
ସାଇ ଭାଇଆ
ସମମାଅ କାଚ ସିନ୍ଦୁର ଲଗେଇ
ହୋଇଛନ୍ତି ଠିଆ ।
ହୁଂସାରେ ସରବେ ପୋଡ଼ ଜଳଗଲେ
ତାଅ ପଛରେ
'ଲଜ ନାହିଁ ଯ୍ୱାର' କୁହାକୁହ ହେଲେ
ନଜ ଭିତରେ ।

ମରମେ ଅଭିର ମଲେ ପଢ଼ଣାଏ
ବରଷ ପରେ
ଦେଖିଲେ ଆସଇ ସମମାଅ ପୁଅ
ଧନ୍ କାଖରେ ।



## ଅର୍ଘ୍ୟ



ନାଲି ଗୁଲୁ ଗୁଲୁ କଅଁଳ ଓଠେ
ମଧୁର ହାସ ଖେଳେ
ନୀଳକାଇଁଚ ଭେଟେଇ ବୃନ୍ତଣ
ତରୁଣୀ ଯେତେବେଳେ,
ବସନ ନାହିଁ ମଥା ପଟର
ସମୀର ବହେ ମନ୍ଦ
ଚିକ୍କଣ କେଶ ପୃଷ୍ଠେ ଝୁଲେ
ଉଠେ ଗୋଲାପୀ ଗନ୍ଧ,
ନୟନେ ସ୍ୱଭେ ଚଞ୍ଚଳତା
ସରସତା ଫୁଟେ
ନୀଳ-ଦୁକୂଳ ତନୁ କେତକୀ-
ଅଙ୍ଗ-ଗନ୍ଧ ଛୁଟେ,
ବାତାୟନର ପାଶେ ରହି
ଚାହିଁଛି ତରୁଣଟି
ଭବ-ବିହ୍ୱଳ ମାଦକ-ଭୋଳ
ହୋଇଛି ତା ଅଙ୍ଗଟି,
ତରୁଣୀ ବାରି କାହାର ଛାୟା
ଚମକି ଦେଲା ଚାହିଁ
ତରୁଣଭାଷେ, "କଅଁଳ ଓଠୁ ନିଗାଡ଼ ହସ
ସଜନି, କାହାପାଇଁ ?"

# ପ୍ରଣୟ ଚିଠି

ଯେ ଦିନ ପାଇଲା ଯୁବକ ପରିଣୟ ବାରତା
ଚପଳ ମାନସେ ତାହାର କେତେ ତୋଳିଲା କଥା ।
ଘୂରିଗଲା ମଥା ତାହାର ଭାବ ଭାବନା ସ୍ରୋତେ
ପ୍ରଣୟର ମଧୁ ଝଙ୍କାର ତାର ଅନ୍ତରେ ବାଜେ ।
ବିଂଶତି ବରଷ ବୟସ, ଯଉବନ-ଅରୁଣ
ସୁନେଲିର ଛାପ ଆଙ୍କିଛି ତାର ଅଙ୍ଗ ଅକ୍ଷୁଣ୍ଣ !
ଯୌବନ-ମାଦକେ ତାହାର ଅଙ୍ଗ ଭରିଛି ପୂରି
ପ୍ରଣୟ-ଅର୍ଚ୍ଚନା କେତେ ସେ ଲୋଡ଼େ ଏକାନ୍ତେ ବୁଲି !
ଆଜ କିଂତୁ ତାର ଭାବନା ଧରି ବହୁ ଆକାର
ପ୍ରଣୟ-ରଇଜ ସୃଜିଲା ଇନ୍ଦ୍ରଧନୁ ପ୍ରକାର ।
ବୁଡ଼ିଗଲା ଦିନ ଯେବେ କି ସଞ୍ଜ ଅଇଲା ମାଡ଼ି
ଉଡିଗଲେ ପକ୍ଷୀ ଆକାଶେ କେତେ ଧାଡ଼ି କି ଧାଡ଼ି
ପ୍ରଦୀପଟି ଜାଳି ତରୁଣ ଏକା ବସି ରହିଲା
ପ୍ରଣୟ ତୂଳୀରେ ଜୀବନ କଉତୁକେ ଅଙ୍କିଲା ।
ସହସା ଆସିଲା ବିଷାଦ ସଙ୍ଗେ ବିରହ ଖେଦ
ବାହୁନିଲେ ତାର ଅନ୍ତରେ ଅସ୍ଥି ମଜ୍ଜା ଓ ମେଦ ।
କାନ୍ଦିଲା ଅନ୍ତର, "ତରୁଣି ! କେଉଁ ସ୍ୱପନେ ଲୁଚି
ଅଛ, ତୋର ଲାଗି ତରୁଣ ବୃଥା ଖୋଜି ବୁଲୁଛି ।
ଯୁବତୀ, ତୁମେ ଗୋ ଅଜଣା ପୁଣି ଅଚିହ୍ନା ସିନା
କିଂତୁ ମୁହିଁ ଝୁରି ମରୁଛି ତୁମ ପ୍ରଣୟ ବିନା

ତୁମ ରୂପ ଗୁଣ ବର୍ଣ୍ଣନା ସହୁ, କର୍ ଶ୍ରବଣ
ସକଳ ଇନ୍ଦ୍ରିୟ ଗୃହୁଁଛି ତୁମ ଶୁଭ ମିଳନ ।
କନକ-ପ୍ରତିମା ତୁମେ ଗୋ କଲପନାରେ ଭାସ
ତୁମେ ଗୋ ମରନ୍ଦ ଗନ୍ଧ ଏ ମୋ ମାନସେ ଅସ ।
କଳା ବଇଦ ମୁଁ ହୋଇଛି ତୁମେ ହେବ ଚପଳା
ପଙ୍କିଳ ଜଳ ମୁଁ ସହୁ ଗୋ ତୁମେ ଅସ ନିର୍ମଳା ।
ପ୍ରିୟତମେ, ମୁଁ ଗୋ ବସନ୍ତ ତୁମେ ମଧୁକୂଜନ,
ତପନ ଯେବେ ମୁଁ ସହରେ ତୁମେ ସ୍ନିଗ୍ଧ ଚନ୍ଦନ ।

ସଜନ, ଯେବେ ମୁଁ ବରଷା ତୁମେ କବିତା-ସିନ୍ଧୁ
ଶରତ୍ ଯେବେ ମୁଁ ପ୍ରେୟସି, ତୁମେ ବିମଳ ଇନ୍ଦୁ,
ସହୁ, ମୁଁ ହେମନ୍ତ, ତୁମେ ଗୋ ଶୁଭ୍ର ଶିଶିର ତୁଲ
ଶୀତ ମୁହିଁ ଯେବେ ପ୍ରିୟାରେ ତୁମେ ଶୀତ-ଦୁକୂଳ ।
ପ୍ରିୟ ମୁଁ, ପ୍ରେୟସୀ ତୁମେ ଗୋ ତୁମ ଅଭାବେ ସହି
ପ୍ରଣୟିନୀ, ତେଣୁ ପ୍ରଣୟୀ ପ୍ରାଣ ହୁଅଇ ଦହି ।
ରୋପିଲିଣି କେତେ ସୁମନ ବୃକ୍ଷ ଅନନ୍ତ ଚିତ୍ତେ,
ବାତାୟନ ପାଶେ ମୋହର ବୃତ୍ତି ପ୍ରେମ-ସରିତେ ।"

ଏ ରୂପ ଭାବନା କେତେ ଯେ ଅଙ୍କି ତରୁଣ ମନେ
ଉଦାସୀନ କ୍ଷଣେ ହୁଅଇ ପଡ଼େ ଚମକି କ୍ଷଣେ ।
ପାହିଗଲା ରାତି ଯେବେ କି ପୂର୍ବର ଗଗନେ
ପାହାନ୍ତ ତାରଟି ଚାହିଁଲା କରୁଣର ନୟନେ ।
ନିଦ୍ରାହୀନ ଏକା ଯୁବକ ରାତି କାଟିଛି ବସି
ଯେଣୁ ସେ ସକଳ ଉର୍ଦ୍ଧ୍ୱରେ ଲେଖିଛି ପ୍ରେମ-ସରସୀ ।
ସଙ୍କ୍ଷିପ୍ତ ଭାବନା ଏଡ଼ି ସେ ସ୍ୱର ପୂର୍ବୋକ୍ତ ପଂକ୍ତି
ଛଟି ଆକାରରେ ଲେଖିଲା ତାର ପ୍ରେୟସୀ ପ୍ରତି ।

ଲଗିଲଣି କର୍ମେ ଜଗତ ଅଙ୍ଗୁ ତେଜି ଅଳସ
ସରସୀରେ ପଦ୍ମ ଚାହିଁଲା ମୁଖ କରି ସରସ ।
ମାତର ଅଧୁଆ ମୁହଁରେ ଗଣ୍ଠି ଫିଟୁଣି ଲେଖେ
ଏପାଖ ସେପାଖ ଭରପେ କେତେ ବଡ଼ ସେ ଦେଖେ ।

ଦେବ କାହାହସ୍ତେ ପତ୍ରିକା ପ୍ରିୟତମା ନିକଟ
ଲୋକହସ୍ତେ ଦେଲେ ଭାବେ ସେ କାଳେ ହେବ ପ୍ରକଟ !

ଭାବଇ ସେ କିସ କରିବ ତାର ଅନ୍ତର ଥରେ
ବୃଥା କଣ ସବୁ ହୋଇବ ? ନେତ୍ରୁ ଲୋତକ ଝରେ ।
ଭାବୁ ଭାବୁ ମନେ ପଡ଼ିଲା 'ଧନୀମାଆ'ର କଥା
ଯାଏ ବୃନ୍ଦୀ ବନ୍ଧୁଥର, ସେ ଗ୍ରାମେ ଝିଅଘର ତା ।

ଭାବିଲା ଯୁବକ ତା ଯୋଗୁ ହେବ ସବୁ ସଫଳ
ଡକାଇ ଆଣିଲା ବୃନ୍ଦୀଙ୍କି ଗଣ୍ଠି ଦେଇ ହାତର
କହିଲା ଗୋପନ ଖବର, ଦେଇ ଖରଚୁ ହାତେ
କାଲି ବାଟ ପୁଣି ଗଲା ସେ 'ଧନୀମାଆ'ର ସାଥେ ।
ଫେରି ତହୁଁ ଆସି ଯୁବକ ବସି ଶୟନ ଘରେ
'ବାଟ ତିନି କୋଶ ହୋଇବ !' ଭାବେ ତାର ମନରେ;
ସଞ୍ଜ ସୁଦ୍ଧା ବୃନ୍ଦୀ ଏଠାରେ ଆସି ହେବ ପ୍ରବେଶ
(ତହୁଁ) ନିତ୍ୟକର୍ମ ସାରେ ଯୁବକ ବହୁ ଅନ୍ତରେ କ୍ଳେଶ ।

ଚଢ଼ ଚଢ଼ ହୁଏ ଯୁବକ କାହିଁ ବେଳ ବୁଡ଼ୁନି
ଦିବସ ଅଲୋକ ଛୁଟୁନି, ସଞ୍ଜ ଦୀପ ଜଳୁନି !
ସେ ଦିନ ଦିନଟା ତାହାକୁ ଲାଗେ ବରଷ ପରି
ବୃନ୍ଦୀକି ଚାହିଁ ତା ନୟନ ଅଶ୍ରୁ ଗଲାଣି ମରି ।
କେତେ ଦଉଡ଼େ ସେ ଦାଣ୍ଡକୁ କେତେ ଆସଇ ଘରେ
କେତେ ଶୋଇପଡ଼େ ଭୂଇଁରେ କେତେ ବସେ ଖଟରେ ।

ତଥାପି ଦାନଣା ଯାଉନି, ଘଡ଼ି ଘଣ୍ଟା ବାଜେ ନା
ସୁନୀଲ ଗଗନେ କାହିଁ ତ ସନ୍ଧ୍ୟାତାରା ଉଠେନା !
ଦେଖିଲା ଯୁବକ ରହିଛି ଆଉ ଓଳିଏ ଦିନ
ମନ ଭୁଲାଇବା ପାଇଁକି ଚଉକିରେ ବସିଣ
କାଗଜ କଲମ ରହିଛି ଥୁଆ ଟେବଲ ପରେ
ଲେଖିଲା କବିତା ଯୁବକ ଉଚ୍ଛୃଙ୍ଖଳ ମନରେ,
"ପ୍ରିୟେ, ତୁମ ହୃଦ ପଥର ପରି ଟାଣକି ସତେ
ଗୋଡ଼େଇ ଦେବ ମୋତେ ଫୋପାଡ଼ି ? ଯାଏ ନାହିଁ ପରତେ ।
କପରି ହୁଏ ମୁଁ ବିକଳ ସହୁ, ଜାଣନ୍ତ ଯେବେ
ଶୁଣାଇବା ପାଇଁ ତୁମର ମଧୁ ଭାଷାକୁ ତେବେ
ହୁଅନ୍ତ ନୀରବ, କରନ୍ତ ଡେ଼ର ରେ ପ୍ରାଣପ୍ରିୟା,
କାଟିପକାଉଛି ଛୁରିରେ ସତେ କିଏ ମୋ ହିଆ ।

ତିମିରେ ଅକୂଳ ସାଗରେ ମୋର ଜୀବନ-ନାହା,
ଧ୍ରୁବତାରା ତୁମେ କାହିଁକି ନାହିଁ ମିଳଇ ରାହା ।
ଫୁଟି ଝଡ଼ପଡ଼େ ସୁମନ ଆଶା ହେଉଛି ବ୍ୟର୍ଥ
କାଲି ସିନା ଶୂନ୍ୟ ଯାଉଛି ଗଡ଼ି ଭାଙ୍ଗି ଜଗତ !"

ଘଡ଼ି ହୋଇଲାଣି ଏବେଳେ ବେଲ ଗଲାଣି ବୁଡି
ଚଉକି ପଛରେ ଉହ୍ଲର ଯେନ ରହିଛି ବୁଢ଼ୀ
'ନଥ' ବୋଲି କହୁଁ ଯୁବକ ଚମକିଲା ସତ୍ୱର,
ଶଠି ଦେଇ ନେଇ ବକ୍ସିସ୍ ବୁଢ଼ୀ ଗଲା ତା ଘର ।
ଅଜଣା ଶଠିଟା ହାତରେ ଧରି ତରୁଣ ଥରେ
ସକଳ ଶକତି ଅଜାଡ଼ି ଦେଲା ଶଠି ଉପରେ
ପଢିଲା ତରୁଣ ଆବେଗଭରେ ଆନନ୍ଦେ ମାତି
ମଧୁମିଳନର ଆଶାରେ ଫୁଲି ଉଠିଲା ଛାତି ।

ପଢ଼େ ସେ,“ ପାଇଲ ଧନ, ମୁଁ ତୁମ ସ୍ନେହ-ପତର
ମଧୁମୟ ତୁମ ଲେଖାରେ ଝୁରେ ଏ ମୋ ଅନ୍ତର ।
ପ୍ରିୟତମ ସତେ, ମୋ ପାଇଁ ତୁମେ ବ୍ୟାକୁଳ ଏତେ ?
ତୁମ ହୃଦ-ଛାପ ଅନ୍ତରେ ମୋର ପଡ଼େ ଯେ କେତେ
ଦେଖୁଅଛୁ ସୃଷ୍ଟି ପ୍ରଣୟ-ରଙ୍ଗେ' ପ୍ରେମ-ସଂଗ୍ରାମ
ମୁହୂର୍ତ୍ତେ ମୁହୂର୍ତ୍ତେ ଚେତନା ହାରି ଯାଉଛ ଧାମ ।
ଧନ ମୋର, ତୁମେ ମୋ ପାଇଁ ଅଶା ତୋଳୁଛ କେତେ
ଅଶାୟୀ ନୟନେ ସୁତୀବ୍ର ବ୍ୟଥା ବହୁଛ ଯେତେ
ଦେଲ ମୋତେ ତାହା ଜଣାଇ ତୁମ ପ୍ରେମ-ପତର
କିଂନ୍ତୁ ଅଜ ମୁହିଁ ଦୁର୍ବଳ ଶକ୍ତି ନାହିଁ ମୋହର ।
ନ ବୁଝି ନ ଶୁଝି ବାପା ମୋ କରୁଛନ୍ତି ସମ୍ବନ୍ଧ
ମାତ୍ର ପ୍ରିୟ, ମୁହିଁ ରହିଛି ଅନେ ହୋଇ ଅବଦ୍ଧ ।
ବାଲ୍ୟକାଳୁ ବକ ଦେଇଛି ଜଣେ ଏ ମୋ ପରାଣ
ପ୍ରଣୟର ସେତୁ ରଚିଛୁ ଦୁହେଁ ଏକତ୍ର ଜାଣ ।

ଆଜ ତାହା ଶତ ରୂପରେ ଠିଅ ମୂରତି ଧରି
'ରକ୍ଷ ଗୋ ପ୍ରଭଞ୍ଜ' କହେ ସେ ଘୋର ହୁଂକାର କରି ।
ଯେବେ କ ପ୍ରଭଞ୍ଜ ଟୁଟାଇ ଭାଙ୍ଗି ପ୍ରଣୟ- ସେତୁ
ପ୍ରଥମ ପ୍ରଣୟ-ଅଞ୍ଜନ ଯେବେ ପୋଛି ମୁଁ ନେବୁ ।
ତୁମ ପଦେ ପ୍ରାଣ ନହିବ ପ୍ରେମ-ଅର୍ଘ୍ୟ ଥୋଇବ
ଦୂରେ ଥାଉ ମଧୁମିଳନ ଜଳଯୋଡ଼ ମରିବ !
ପ୍ରଥମ ଯୌବନ ମିଳନେ ଯେବେ ଲାଗେ ଅଘାତ
ପ୍ରଥମ ପ୍ରଣୟ ମୂଳରେ ବ୍ୟଥା ଯେବେ କ ଜାତ
ହୁଏଇ, କହିବ କପର ଶର ଜୀବନ ତାର
ଦେଖି, ପଢି, ଶୁଣି, ପ୍ରିୟ ହେ, ନାହିଁ ବୁଝି କ ପାର ।

ପ୍ରେମ ଓ ପ୍ରବୃତ୍ତି ମଧ୍ୟରେ ଯେବେ ପ୍ରଭେଦ ଥାଏ
ଯେବେ କି ଅମର ଜୀବନ ଏହି ରୂପରେ ଯାଏ,

ନ ହୋଇବ ମୁହିଁ ସ୍ୱପନ ତୁମେ ନ ହେବ ଅଳି
ହେବ କିନ୍ତୁ ପଦ୍ମରାଣୀ ମୁଁ ତୁମେ ମରୀଚମାଳି,
ଏରୂପେ ଜୀବନ କାଟିଲେ ଯିବା ଶାନ୍ତି ପଥରେ
ଶରୀର ମିଳନ ଇଚ୍ଛିଲେ ହେବା ତୋ ଦୂରରେ ।

ପ୍ରିୟ ଭୁଞ୍ଜୁଥିବ ଯେବେ ଏ ମୋର ନଶିବ ନଡ
ତୁମ ବ୍ୟର୍ଥ ଆଶା ପୂରଣେ କିଂତୁ ନାହିଁ ଶକତ ।
ଯେବେ ତୁମେ ହେବ ପ୍ରେମିକ, ମୁହିଁ ପ୍ରେମିକା ହେବ ।
ଗନ୍ଧବହ ସମ ସୁମନ ଗନ୍ଧ ଛୁଟାଇ ଦେବ ।
ନ ହୋଇ ତା ଯେବେ କନ୍ଦୁକ ପ୍ରାୟେ ମୋତେ ଗୋ ଗୃହିଁ
ମକ୍ଷିକା ତୁମେ ମାତର ସଦା ଦୂରରେ ଥାଅ ।
ଯେବେ ବଳବତୀ ପ୍ରବୃତ୍ତି ନେଇ ଲେଖିଛ ଚିଠି
ଏହି ମୋର ଶେଷ ପତ୍ର ତେବେ, କହିଲି ଇତି ।"

ସହସା ପଡ଼ିଲା ଯୁବକ ଶିରେ ଭ୍ରଜକ୍କି ଘର
ଥର ଥର ହେଲା ଅଙ୍ଗ ତା ନେତ୍ରେ ଫିଟିଲା ଝର ।
ଘୃଣାରେ ପୁଣି ତା ହୃଦୟ ଗଲା କ୍ଷଣକେ ପୂରି
ଦେହସାରା ଈର୍ଷ୍ୟାପ୍ରକମ୍ପ ଗଲା ନିମିଷେ ବୁଲି ।

କମ୍ପିତ ସ୍ୱରରେ ପୁଣି ସେ ଅବରୁଦ୍ଧ କ୍ରୋଧରେ
ଭାଷିଲା, 'ତରୁଣି, ଅବୋଧ ତୁହି ଏତେଡ଼ ହାସ୍ୟରେ !'
ଈର୍ଷ୍ୟା ଦ୍ୱେଷ ରାଗ ନିମିଷେ ପୁଣି ମିଳାଇଗଲା
ପ୍ରଣୟ-ରାଇକେ ଯୁବକ ସ୍ୱତଃ ବିଦ୍ଧାର କଲା,
ଭାବିଲା, ଅବଳା ସହଜେ ନାହିଁ ବୁଝି ସେ ପାରେ
ଜଗତର ନ ଅ ସଂସ୍କାର ଥରେ ଲେଖିବ ତାରେ ।

କହିଲା ତ ଲେଖି ବସିଲ, "ପ୍ରିୟେ, ଲେଖିଛ ଯାହା
ବାସ୍ତବ ଜଗତ କଥା କି ଥରେ ଭାବିଛ ତାହା ?
ବିନା କାରଣରେ କାର୍ଯ୍ୟ କି କାହିଁ ହୁଏ ଉତ୍ପତ୍ତି
ଜପ ତପେ ବିନା କାରଣେ କେହୁ ହୁଅଇ ବ୍ରତୀ ?
ଜଗତର ପ୍ରତି ମୁହୂର୍ତ୍ତି-ପ୍ରତି କ୍ରିୟା-କାରଣ
ଅଛି ବୋଲି ସିନା ସତତ ଧାଏଁ କର୍ମେ ଜୀବନ ।
ନ ଦେଲେ ତ ପଡ଼ି ଥାଆନ୍ତେ ସବେ ପଥର ପରି
ମରୁଭୂମି ହସୁଥାଆନ୍ତା ଅଙ୍ଗ ବିକୃତ କରି ।
ଦାନ ଧର୍ମ୍ମ ପୁଣ୍ୟ ବ୍ରତେ ଅଛି ଉଦ୍ଦେଶ୍ୟ କିଛି
ଲକ୍ଷ୍ୟ ହୀନ କରମରେ କି କାର୍ଯ୍ୟ ତବେ ରହିଛି ?
ପ୍ରେମ ସ୍ନେହ ଶ୍ରଦ୍ଧା ସେରୂପ ଅଛି ତାର ମୂଳରେ
ଅସ୍ୟୃ ହଭବ, ଗୋପନେ ଯେତ୍ନ ଠାଣେ କୌଶଳେ ।
ପ୍ରେମ କରିବକି ଶୁଖିଲ୍ଲ ମୂହେଁ ଅନଳ ଜାଳି
ସ୍ନେହ କରିବ କି ତଇଲ ବିନା ପ୍ରଦୀପ ଜାଳି ?
ଯୁବତି, ଦେଖୁଛ ପ୍ରବୃତ୍ତି ପ୍ରେମେ ପାର୍ଥକ୍ୟ ଯେବେ
ପ୍ରବୃତ୍ତି ନ ଥିଲେ ପ୍ରେମକି ହେବ ସମ୍ଭବ କେବେ ?
ଯୋଗୀ କରେ ଯୋଗ ମୁକତି ଅବା ଶକତି ପାଇଁ
ଦାନ କରେ ଦାତା ଅଧିକ ଧନ ପାଇବା ପାଇଁ,
ପୂଜା ବ୍ରତ କରେ ରମଣୀ ସ୍ୱାମୀ-ମଙ୍ଗଳ ସ୍ମରି
ରୋଗ ଶୋକୁ ମୁକ୍ତ ନିମିତ୍ତ ନର ଯାଏ ବା କରି ।
ଅଭିଳାଷ ଅଗେ ଆସଇ, ଆସେ କରମ ପଛରେ
କର୍ମ୍ମ ପଛେ ଅଭିଳାଷର ମୋହ ତାଙ୍କେ ମନରେ ।
ଆଗେ ଦୃଷ୍ଟି-ଲକ୍ଷ୍ୟ, ତାପରେ ବସେ ଧନୁରେ ଶର
ମୁଣି ଦୃଷ୍ଟି-ଲକ୍ଷ୍ୟ ନ କରି ମାରି ପାରେ କେ ଶର ?

ସେରୂପେ ପ୍ରବୃତ୍ତି-କଳନା ଅଗ୍ର, ପ୍ରେମ ତା ପରେ
ପ୍ରେମ ପଛେ ପୁଣି ପ୍ରବୃତ୍ତି ମାତ୍ର ଆସଇ ଖରେ ।
ପ୍ରବୃତ୍ତି ନ ଥାଇ ଯେବେ କେ ପ୍ରେମ କରି ପାରଇ
ମରଣ ନ ଥାଇ ଜନମ-ସୃଷ୍ଟି ଯେବେ ହୁଅଇ,
ବିନା ଖାଦ୍ୟେ ଯେବେ ଜଗତେ ଲୋକ ଜୀଇଁ ସକଳ
ଅସମ୍ଭବ ଅଭାବ ଅଛି ସବୁ, ବୁଝ ମନର ।
ଜାଣେ ଯାହା ପ୍ରାଣସଜନ, ଆଜି ଥରେ ଦେଖିଲି
ଏଥର ନାରୀ ଉତ୍ତର ପାଇଁ ଚାହିଁ ରହିଲି ।
ଦିଅ ବା ନ ଦିଅ ପ୍ରଣୟ ଇଚ୍ଛା ତୁମର ତାହା
ସତ ମିଛ କାହିଁ ବୁଝିବ ମୁହିଁ ଲେଖିଲି ଯାହା ।"
ଲେଖିସାରି ତହୁଁ ଯୁବକ ଡାକି ପୁଣି ବୃଦ୍ଧୀକି
ଖରଚ ସହିତ ତାହାର ହାତେ ଦେଲା ଚିଠିକି ।
ଚାହିଁ ବସିଲା ସେ ସେଦିନ ପରି ମୁହିଁକୁ ମାର
ଅନ୍ତର-ରକତ ନୟନେ ଅଶ୍ରୁ ରୂପରେ ଢାଳି ।
ନାହିଁ ଛି ଯେବେ କି ଆଗର ତନ୍ମୟତା ତାହାର
ପୂରିଛି ମାତର ନୟନେ ମାଦକତା ଆଶାର ।
ଚାହିଁ ଚାହିଁ ବେଳ ବୁଡ଼ିଲା ବୃଦ୍ଧୀ ଆସିଲା ଫେରି
ଚିଠି ନେଇ ପଢ଼େ ତରୁଣ କ୍ଷଣେ ନ କରି ଡେରି ।
ଆଶା ନିରାଶାର ଘୂର୍ଣ୍ଣିରେ ପଡ଼ି ତରୁଣ ଥରେ
କେତେ କେତେ ଭାବ ଭାବନା ଉଠି ଲଭେ ଅନ୍ତରେ ।
ଫିଟାଇଲା ଥରି ଯୁବକ ଧୀରେ ଖୋଲି ଚିଠିର
ଅଜଣା ବିପଦ ଚମକେ ନଇଁ ପଡ଼ିଲା ଶିର ।
ଉତ୍ତର ହୁଅଇ ଯେତିକି ଅଙ୍ଗ ଉଠଇ ଥରି
କରୁଣ ଲୋଚନ ଯୁଗଳ ନେତ୍ରେ ଉଠଇ ଭରି ।

ମାର ଶେଷେ ଦୀର୍ଘ ନିଃଶ୍ୱାସ ପଡ଼େ ଯୁବା ସଧୀରେ,
"ଧନ, ମୋର ମଥା ଘୂରିଲା ତୁମର ଏ ଚିଠିରେ
ଜାଗରଣ କିବା ସପନ, ମିଛ ଅବା କି ସତ
ମନେ ହେଲା କାମ ଅକ୍ଷରେ ଲେଖା ଏ ଅସଂଗତ।
ଯଦିବା ହୋଇବ ତୁମର ଲେଖା ଯୁକ୍ତିସଂଗତ
ତଥାପି ପରାଣ କହୁଛି ମୋର ଏହି ରକତ—
—ସ୍ୱପ୍ନ ଗୃହିଅଛି ଉଦ୍ଦେଶ୍ୟପଥେ ମହାସାଗରେ
ଆଗେ ହେଲେ ବନ୍ଧ କି ହେବ ଭାବ ମନରେ ଥରେ।
ତୁମର ଲେଖାରେ ଯଥେଷ୍ଟ ମିଳେ ତାର ପ୍ରମାଣ
ନିଜ ବ୍ୟଥା ବୁଝି ଅପର ବ୍ୟଥା ନାହିଁ କି ଜାଣ ?
ଫୁଲ ଗଛୁ ଫୁଲ ତୋଳିବ ତୁମ ବିଳାସ ପାଇଁ
ଯେ ବ୍ୟଥା ତା ପ୍ରାଣେ ଜାଗିବ ତାହା ବୁଝୁଛ ନାହିଁ ?
ପ୍ରଣୟ-ପସରା ଦେଇଛି ଲଦ ଯାହାର ଶିରେ
ଯିବ ଯେବେ କି ଓହ୍ଲାଇ ମୁଁ ଗୃହି ତୁମ ସାଥିରେ
ପଡ଼ି ଭାଙ୍ଗିଯିବ ତାହାତ, ଯେତେ ଜଳିବ ନିଆଁ
ଦମ ଦମ୍ ତର ଜୀବନ ଏ ମୋ ପଡ଼ିବ ଧୂଆଁ।
ଅଙ୍ଗାର ହୋଇବ ଅଙ୍ଗର ଶିଖା, ହୋଇବ ଜଡ
ଧରିବ ନାହିଁତ ଜୀବନ-ବୃକ୍ଷେ ପ୍ରଣୟ-ଜଡ଼।
କି ନେଇ କରିବ ତୁମେ ଗୋ ଖଣ୍ଡ ପାର୍ବଣ ଗଦା
ନ ଫୁଟିଲେ ଯେଉଁ ପ୍ରଣୟ-ପୁଷ୍ପ ଥିବ କି ଶ୍ରଦ୍ଧା ?
ହେବ ଲଭ ମାତ୍ର ହୋଇବ ତୁମେ ଦୁଃଖ-ଅନ୍ତର
ପୋଡ଼ି ଦେବ ତୁମ ସଂସାର-ସୁଖ ଚିନ୍ତା-ଅନଳ।
ଯାଉ ଆଜ ଲୋଡ଼ା ତାହାକୁ ପଦେ ଦେବା ମଳିତ
ସ୍ୱର୍ଗ-ସ୍ୱର୍ଗୀୟ-ସମାଧି ଯିବ ମାତର ରଚ।

ହେଉ ସତ, ମିଛ କଅବା ମୋର ଯୁକ୍ତିଫଳ
ଦେବ ପ୍ରେମ-ମାଳା ଯା, ପଦେ ଭାଳଛ ଏ ଅନ୍ତର ।
ବୃଥାରେ ବ୍ୟଥାକୁ ଲଦନା ପ୍ରିୟୁଣିରେ ତୁମର
ସଂଯତ ହୃଦୟେ କରମ କର ବସ୍ତୁର କର ।

ପ୍ରିୟ, ପ୍ରିୟତମ ଭାବି ମୁଁ ଚିଠି ଲେଖିବ ଯେବେ
ସଂଯତ ପ୍ରେମିକ ଯୁବକ ହୁଅ ପ୍ରିୟ ହେ ତେବେ ।
ନ ହୋଇ ଲଭିକା ଲୋଡ଼ିନା ଅଙ୍ଗେ ତବ ସୁମନ
ହୋଇ କଳ୍ପ ଦ୍ରୁମ, ଲଭିକା ବାଞ୍ଛା କର ପୂରଣ ।

ଦେବା ପଛେ ଯେବେ ନେବାର ଆଶା ପୋଷିଛ ପ୍ରାଣେ
ପୁଣ୍ୟ ପଛେ ଯେବେ ପାପର ଆଶା ଗୋପନେ ଠାଣେ ।
କପଟ ବାସ୍ତବ ତଳରେ ଯେବେ ରହିଛ ମିଛ
ଏ ରୂପ ଜଗତ ପଥରେ ଯେବେ ଗତି କରୁଛ,
ତେବେ ମୁଁ ନାଗୁର ଦେବାକୁ ତୁମ ଚିଠି ଉତ୍ତର
ଅଜଣାରେ ମୋର ଥରୁଛି ତେଣୁ ଅଙ୍ଗ ସକଳ ।
ନେଉଛି ବିଦାୟ ତେଣିକ ମନୁ ବ୍ୟର୍ଥ ଆଶାକୁ
ଚାହିଁବ ମାତ୍ର ଗୋ ପ୍ରେମିକ-ନେତ୍ରେ ଏ ପ୍ରେମିକାକୁ ।"

ପଢ଼ା ହେଲା ଶେଷ, ଯୁବକ ଘୋର ଚିନ୍ତା-ଆକୁଳ
ବିପଦ-ସାଗରେ ଯାଏ ସେ ବୁଡ଼ି ନ ପାଏ କୂଳ ।
ବିରକ୍ତ ଆସିଲା ଯେତିକ ହେଲା ହରଷ ପୁଣି
ଶୁଣି ଭାଷା ଭଙ୍ଗୀ ରଚନା ଲେଖିଛି ଯା ତରୁଣୀ ।
କାହାଣ କରିଲେ ଯୁବତୀ କାଁଭୁ ଯୁବକ ମନେ
ଆକର୍ଷଣ ଶକ୍ତି ଜାଗିଲା ଅପ୍ରକାଶ ଗୋପନେ ।
ଯୁବତୀର ଭାଷା-କୌଶଳ ଏଡ଼ି ଯୁବା-କାହାଣ
ଧୀରେ ଧୀରେ ପୁଣି ଡାକିଲା ଆଶା ଓ ଅନୁରାଗ ।

'ଦାରୁଣ ଜ୍ୱଗଣ ପତ୍ରିକା'—ନାହିଁ ତରୁଣ ଭାବେ
'ଛଳନା-ଚତୁଳ-ରଚନା ତାହା' ଯୁବକେ ଲାଗେ ।
ରାଗ, ଅଭିମାନ ଭୁଲି ସେ ପ୍ରେମେ ହୋଇଲା ମୋହ
ବରହ-ଦହନେ ଅନ୍ତରୁ ତା'ର ଉଠିଲା କୋହ ।
"ଛନ ଥରର ଛାଡ଼େ ଧରମ" ଯୁବା ମନେ ପାଞ୍ଚିଲା
ଅଣାୟୀ ହୋଇ ସେ ପୁନସ୍ତ ଶଠି ଲେଖି ବସିଲା ।
ଲେଖେ ସେ, ''ପ୍ରେମର ଦେବତା ମୋର ପ୍ରାଣ ଜୋଛନା,
ଦେଇ ଏତେ କଷ୍ଟ ପ୍ରେୟସି, ବୃଥା ଆଉ ଛଳନା ।

ଯେବେ ସତ, ମୁହିଁ ହାରିଲି ଲେଖା ଯୁକତ୍ତି ମତେ
ତଥାପି ଜପିଛି ତୁମର ନାମ ମୋ ହୃଦଗତେ ।
ହବା ଜାଣି କେତେ ବସିଛି ଚାହିଁ ତୁମର ପଥ
ମିଳନ ଆଶାରେ ତୁମର ଜାଗିଛି ଏ ରଜତ ।
ମନ-ମନ୍ଦିରରେ କେତେ ମୁଁ ଭକ୍ତା-ଧୂପ ଜାଳିଛି
ବାହ୍ୟ ରୂପେ ରକ୍ତ କେତେ ମୁଁ ନୟନରେ ଢାଳିଛି ।
ସକଳ ଶକତି ମୋହର ତୁମ ରୂପ ଗ୍ରହିଛି ।
ତୁମ ପାଇଁ ଯେବେ ସକଳ ସ୍ୱାର୍ଥ, ଆଶା ଯାଇଛି ।

ତେବେ ତାର ମୂଲ୍ୟ କିଛି କି ନାହିଁ ତରୁଣି, କହ
ବୃଥାରେ କିପାଇଁ ଦହ ଗୋ ମୋର ପରାଣ ଦହ ?
କହରେ ସୁନ୍ଦରି, ଶେଷେ ମୁଁ କହେ ଦେଲେ ଜୀବନ
ହେବ କି ତୁମର ପ୍ରଣୟ-ପଥ-ବାଞ୍ଛା ପୂରଣ ?

ଦୁର୍ଲ୍ଲଭ ମାନବ ଜୀବନେ ଯେବେ ନ କର ଭୋଗ
କସ ଲାଭ ହେବ ମରଣ ପରେ ହୋଇଲେ ଯୋଗ ?
ରହିବ ଧରଣୀ ସିନା ଗୋ ପ୍ରେମ-ଅଘସ୍ୟ କୀର୍ତ୍ତି
ମାତ୍ର ହାହାକାରେ ଯିବଟି ସାରା ଜୀବନ ବତି ।

ଫାଟି ଯାଉଅଛୁ ଛାତି ମୋ ଘୁରୁ ହେଉଛୁ ମଥା
ଅହରହ ଦିଏ ଥରାଇ ପ୍ରାଣେ ଦାରୁଣ ବ୍ୟଥା ।
ଏ ବେଳେ ସହରେ ଯେବେ କି ମୋର ନ ରହେ ପ୍ରାଣ
ଲୁହା ପରି ତୁମ ଛାତିକି କରି ବସିବ ଠାଣ
ତୁମ ନାମ ଜପି ଚାଲିବ ମୃତ୍ୟୁପଥେ ଏ ଜୀବ
ବୃଥା ବିକୁଫଠା ବ୍ୟଥାରେ କାହିଁ ପ୍ରାଣ ମୋ ଥିବ !
ଘେନିବ ପୀରତି ଚୁମ୍ବନ ଶେଷ ପଚର ଏହୁ
ଦେବ ପ୍ରାଣେ ଶାନ୍ତି ସଜନ, ତୁମ ବିନା ଗୋ କେହୁ ?”



## ଦେବତା ଦୋଷ (?)

ଆମର ଗାଁ ର ଚଇତନ ସାହୁ
ବଡ଼ ବେହିଆ
ନିତି ସକାଳରୁ ଦିଅଁଙ୍କୁ ଦିଏ ସେ
ଫୁଲ ଡ଼ାଲିଆ ।
ଷାଠିଏଠୁ ବେଶୀ ହେଲାଣି ବୟସ
ତୁଟିନି ବଳ
ବେଲ ଶୁଣିବାକୁ ଠୋକାଏ ଡାପାଖେ
ବାନ୍ଧନ୍ତି ଦଳ ।
ଝିଅଟି ତାହାର ଚମ୍ପାର ଗୁଙ୍ଗୁଡ଼
ସୁନା ଫରୁଆ,
ସତେରେ ସେ ସୁନାପାଡିଆ, ପାଇଛୁ
ଯୌବନ ନୁଆ ।

ନାଚ ଫଜବେଳେ ସାନ୍ଧବୁଢ଼ା ଧରେ
ପୁରାଣ ପୋଥି
ଗେଲେଇ ଗେଲେଇ ବସେ ଶୁଣିବାକୁ
ବୁଢ଼ୀଟା 'ମୋଢ଼ି'।
ଯେଦିନ ଅସେନା ସାଥି ପାଇ ମୋଢ଼ି
ଡ଼ାକଇ ବୁଢ଼ା
ମିଛରେ କହଇ 'ପୋଥିବତା, ଦେବ
ନେଇଅ ଚୂଡ଼ା
ସଜଫୁଆ ତାର ଯଉବନ ବନ୍ଧ
ପୁରାଣ ଶୁଣି ।
ଶଢ଼ ଶଢ଼ ହୁଏ ମୋଢି ସବୁଦିନ,
ଆଗ୍ରହେ ପୁଣି
ଶୁଣେ କେଉଁଦିନ ମଧୁର ମିଲନ,
ବିରହ-ଖେଦ
ବିରହ ଗାଥା ସେ ଶୁଣି ବହିନଏ
ଦୁଃଖ-କ୍ଳେଦ,
ଭାବେ, ଅଛି ପୁଣି ନାରୀ ଜୀବନରେ
ଏତେ କଷଣ
ଏତେ ଦୁଃଖ ସହି ରହିବାଠୁ ନୁହେ
କିଆଁ ମରଣ ?
ପୁଣି ଯେଉଁଦିନ ଶୁଣେ ସମ୍ଭୋଗର
ନୂଆ ମିଳନ
ଦେହ ଉଛୁଳାଇ, ଏଣିକି ତେଣିକି
ଢ଼ାଳେ ନୟନ ।
ସବୁଠାରୁ ତାକୁ ଭଲଲଗେ କିଂତୁ
ପୀରତି ପୂତ

ବାସର ଗୀତରେ ଶଯ୍ୟାର ତା ହୁଏ
ଆନନ୍ଦେ ସ୍ଫୁର୍ତ୍ତି ।
ଦଇବେ ଶୁଣିଲି ବୋଲନ୍ତୁଏ ଦନେ,
ସାକ୍ଷୀଗୋପାଳ
ଆସିଲେ କିମିତି ସାକ୍ଷୀହୋଇ ସେହୁ
ବ୍ରାହ୍ମଣ ଦ୍ୱାର,
କଷ୍ଟରୁ ସାରି ସେ ରହିଲେ କିପରି
ପାଇଲେ ପୂଜା
'ଲକ୍ଷ୍ମୀ' ସାଥେ ସବେ ନରରୂପେ କଲେ
ପୀରତି-ପୂଜା !
ଶୁଣି ସେ ସବୁରୁ ସୁଶାନ୍ତ ଯୌବନା
ମୋତି ଭାଷଇ
ହେ ଗାଦଗୋସାଇଁ ! ଏତେଦିନ ସେବି
ବରଷ ବହି
ନସହୁ ପାରିବି, ନରରୂପେ ଆସି
କର ପୀରତି
ଉଡୁ ଶରଦିନ 'ଗୋପାଳଙ୍କ'ପର
ଧ୍ୱଜା କୀରତି ।
ସେଦିନ ରାତିରେ ଚମକିଲି ମୋତି
ଲଭି କା ଛନୁ
ଭାବିଲି ସତେକି ଉଦ୍ଧାରିଲେ ପ୍ରଭୁ
ଘୋର କଷଣୁ !
ଭାଷିଲି ସଖୀରେ କିଏସେ ଆସିଛି
ଶୀନାସଦନ ?
ଶୁଣିଲି ଉତ୍ତରେ,'ଗାଦଗୋସାଇଁ ମୁଁ'
ବ୍ରହ୍ମ-ଭଜନ ।

ସାନ୍ତବୁଢ଼ା ଶୁଣେ ତହିଁ ଅରଦନ
ସକାଳୁ ଉଠି
ଅସିଥିଲେ ପ୍ରଭୁ, ମନ୍ଦକ ସେ ଘରୁ
ଯାଉଛ ଛୁଟି ।
ଝିଅ ପାଶେ ପ୍ରଭୁ ଅସିଥିଲେ ? ନାହିଁ,
ଅନ୍ୟ ପ୍ରକାରେ
ଶୁଣିଲ, ସେ ଜଗିବସିବ ଦେଖିବ
ଅଜ ନିଶାରେ ।
ନ ଜାଣେ ଏକଥା ପତ୍ନୀ କିବା ଝିଅ,
ବୁଢା ଗୃହିଁଛ
ଘଡଅଧେ ଦ୍ୱାର ଫିଟିଲା ଅନ୍ତର
ଗନ୍ଧ ଛୁଟିଛ ।
ସାନ୍ତବୁଢ଼ା ଦେଖେ ଶୁଭ୍ର କଳେବର,
ମୋଡ ସଦନେ
ପଶିଲେ ସେ ଯହିଁ ପଡ଼େ ବୁଢ଼ା ଗଲା
ଅଛ ଗୋପନେ ।
ନାହିଁ ଥିଲ ଅନ ଶଙ୍କା ବୁଢ଼ାରଭ,
ଭବେ କେବଳ
କେଜାଣି ଏରୂପ ଦେଖି ଚମକିବ
ଝିଅ ମୋହର
ଧୀରେ ଛପି ଦେଖେ ମୋଡ ଅଉ ସିଏ
ଶେଯରେ ବସି
ବୁହୁ ଉଛୁଳାଇ ପ୍ରେମ-ଗଳପରେ
ଦଅନ୍ତି ହସି ।
ନିମିଷେ ନିରେଖି ଚମକି ପଡ଼ିଲ
ବୁଢ଼ା ସତ୍ୱର

'ହାୟ କି ହେଲାରେ' କହୁ କହୁ ପାଟି
ହେଲା ଚଞ୍ଚଳ,
"ପ୍ରଭୁବୋଲି ଭାବ ଦେଖିଲି ମୁଁ ଅସି
ଏକି ଘଟଣା
କରେ ଅସି ଏଥେ ପ୍ରେମ-ନାଟ ସେହୁ
ଦୁଷ୍ଟା ମଦନା !
ହାୟ ପ୍ରଭୁ ତୁମେ କି ନକଲ ମୋର
ସବୁ ସାରିଲ
ବାପ ଝିଅ ତୁମ ଗାଳକଲୁ, ଶେଷେ
ଲାଜେ ମାରିଲ ?"
ଦେବତାର କେଉଁ ଦୋଷ ଅବା ସେଥେ
ବୁଝିଲା ସାଧୁ
କ୍ଷମା ବରଷି ଗାଦପରେ କଲା
ବନ୍ଧୁଙ୍କ ଦାଉ
ହେଲା ତାର୍ ରାଗ ପକାଇଲା ବାଧା
ମଦନା ପରେ
ଅଧରାତେ ଯାଇ କଲା ବନ୍ଧୁପାଟି
ଗାଦ ପାଖରେ ।
ଘରକଥା ଘରେ ଦାବିଲା, ଝିଅକୁ
ନଦେଲା ଗାଳି
ସବାକୁ ଠୋକାଏ ଦେଖିଲେ ନାହିଁ ସେ
ତା ଛପାମାଳି ।
ସେଦିନୁ ବୁଢ଼ାର ନାହିଁ ଫୁଲବାଲା
ଛଳକ ଗତା

ଲଟିଲି ତାହାକୁ ପୋଥି, ପୁକାଞ୍ଜଳା,
ସଂସାର ପିତା ।
ପଣ୍ଡିତ ଦଳେ ସେ ଦାନ୍ତକୁ କାମୁଡ଼ି
କଗୃଡ଼ ତଳେ
ଦେଖିଲି ମଦନା ଫୁଲମାଳ ହଏ
ମୋଢର ଗଳେ ।



## କଳ୍ପନା



ଦନେ, ଠିଆ ହୋଇଥିଲି ପଦା ବଲଠାରେ
ନଥିଲେ ସାଙ୍ଗସାଥି
ସପନ ସ୍ୱଇଜ ଫୁଲଡୋଲା ପର
ମନ ଯାଇଥିଲ ମାଢ ।
ଗୃହେଁ ରହିଥିଲି ନେଳଅ ଆକାଶେ
ଙ୍ଗଲକା ଯିମିଛ ଗୃହେଁ
ନାହିଁ ଥିଲି କର କଲପନା ହଣ୍ଟ,
ଦୁରେ ମାତ୍ର ଦୃଷ୍ଟି ଯାଏଁ ।
ପାଖ ସଡ଼କର ନୂଆ ବରଗଛୁ
ଶୁଖିଲା ପତର ଝଡ଼ିଲା
ଖରଖର ତାର ଶବଦେ ମୋହର
ଯୀଣ ଚନ୍ଦ୍ରାଟିକେ ଅସିଲା ।
ଭାବିଲି ପୁରଣ ଲେଖା ସରଗଟି
ରହିଅଛି କାହିଁ ଉପରେ

କାହିଁ ଚଲେ ଅମେ, ଅମ କଳ୍ପକଥା
ଜାଣନ୍ତି ସିଏ କି ବଳରେ ?
ଭାବୁଛ କଣ ମୁଁ ? ସେପରି ସରବ ଜାଣଗୋ
ବସି ଠାଏ ସବୁ ଜାଣନ୍ତି
ମନର ଭାବନା, ପ୍ରେମକଥା, ସବୁ
ପାପ ପୁଣ୍ୟ ସିଏ ବୁଝନ୍ତି !

ହସମାଡ଼ିଲା ଭାବୁ ଭାବୁ ଏହା
ହସିଦେଲି ଠୋଓ ଠୋ
ମୋ ହସକୁ ଦୁଇଗୁଣ ବଢ଼ାଇଲା
ସଂଜ ବାଲୁଆର 'ହୋ'
ମନକଥା ସବୁ କଏ ସେ ବୁଝଇ
ଥାଇ ଏ ଅକାଶ ଉପରେ ?
ଭାବିଲି ଅକାଶ ଶୂନ୍ୟ ଯେଉଁପରି
ତାକୁ ଲେଖି ଦେଇଛୁ କେ ଶୂନ୍ୟରେ ।
ଭାବୁ ଭାବୁ ଏହା ଅକାଶେ ଫୁଟିଲା
ତାରାଟିଏ, ଚମକିଲା
ରାଗିହେଲି ଦେଖି ବିଷାଦ-ପେଡ଼ିକୁ
କାଖେ ଜାକି ଦଉଡ଼ିଲି ।
ଦଉଡ଼ୁ ଦଉଡ଼ୁ ଅଗରେ ପଡ଼ିଲା
ଗହଳିଆ ବରଗଛଟା
ଥମକି ଗଲି ମୁଁ, ଶୁଣିଥିଲି ଯେଉଁ
'ଭୂତକୋଠି' ଭୂତ କଥାଟା,
ଥରିଗଲା ଦେହ, ଜଣାଗଲା ସତେ
ଲୁଗାକାନି କିଏ ଓଟାରେ
ଜଣାଗଲା କିଏ ବରଗଛ ତଳୁ
ଭୟଙ୍କର ବେଶେ ବାହାରେ ।

ହେଲ 'ରାମ, ରାମ, ମା ଦକ୍ଷିଣେଶ୍ୱରୀ,
ମିଛେ ନିନ୍ଦାକଲି ଈଶ୍ୱର
ଡାକିଲି ହେ ପ୍ରଭୁ ବିପଦ-ବାନ୍ଧବ,
କ୍ଷମାକର ଦୋଷ ମୋହର ।
ଏକା ନିଃଶ୍ୱାସକେ ମାଇଲି ମୁଁ ଉଠି
ପହଞ୍ଚିଲି ଆସି ଗୃହରେ
ଦେବତା ଅଛନ୍ତି ନାହିଁ ଘରେ ଭାବି
ପଡ଼ିଲି ପୁଣି ମୁଁ ଭ୍ରମରେ ।
ବାପା ସିନା ମୋର ଗଢ଼ିଲେ ସଂସାର
ଜୀବନେ ସୁନ୍ଦର ସହଜ,
ଦେବତା ଅଛନ୍ତି ନାହିଁ ଭବି ଭାବି
କଲି ମୁହିଁ ଠକା ଜଗତ ।



## 'ନାହିଁ, ନାହିଁ'



ପ୍ରଥମ ପ୍ରଣୟ ମୂଳରେ ଯେଉଁ ଅଘାତ ଲାଗି ଶର ଜୀବନ ପାଇଁ ବ୍ୟଥାର ଦାଗ ଅଙ୍କିଗଲା ସେହି ଅପୂର୍ଣ୍ଣ ପ୍ରେମର ଦେବତା 'ଭାନୁ' ଉଦ୍ଦେଶ୍ୟରେ —

ସରମ ବୋଲା ମରମ ଦ୍ୱାରେ
[illegible]'ର-ଗୀତ,
ଚକିତ ହେଉ— [illegible]
[illegible], କେବ[illegible]

ନାଚିଲା ଯା'ର କନକ-ରୂପ
ମାନସ-ମୁକୁରେ
ଛନକା-ଢେଉ ବାଜିଲା ଯେବେ
ବରଷ ବୁକୁରେ,
ଅଙ୍କିଲି ତେଣୁ ନୀରବେ ବସି
ଅଜଣା ତୁମ ଛବି
ଆଗରେ ଦେଖି ଲୌହ ବାଡ଼
ଗଲି ଟିକିଏ ଦବି ।
ନିମିଷେ କିନ୍ତୁ ତୁଟିଲା ମୋହ
ଫୁଟିଲା ମୁଖେ ହାସ
ଘୃଣ୍ୟ ହେଲା କଠୁର ସେହି
ସମାଜ-ଲୌହ ଫାଶ ।
ଜୋଛନା ଯଥା ମଉଳି ଯାଏ
କଳା ବଉଦ ଘୟେ
ପ୍ରାଣ-କୁସୁମ ମକଟ ଦେବା
ଅନ୍ଧ ସମାଜ ଗୃହେଁ ।
କୁସଂସ୍କାର ସମାଜ-ଭକ୍ତ
ହେବାକୁ ଯେହ୍ନୁ ଲୋଡେ
କୋମଳ ତା'ର ଅନ୍ତରଟିକୁ
ବେଦନା-ବହ୍ନି ପୋଡ଼େ,
ସେଇ ଯନ୍ତ୍ରଣା- ଅନଳେ ମୋର
ଦଗ୍ଧ ହେଉଁ ହୃଦ
ତୁମରି କିଂତୁ ଚନ୍ଦନ-ତନୁ
ପ୍ରଦାନିଲା ମୂଦ ।

ଛାପିଛ ଏ ମୋ          ଶରୀର ଯେବେ
ସୁନ୍ଦର, ତବଲାଗି
ମୃଦୁ ମଳୟ          ଆସଗୋ ତୁମେ
ଅଙ୍କ ମୁଁ ଅନୁରାଗୀ ।
ଅନୁରାଗୀର          ମାନସ-କୁଞ୍ଜେ
ଫୁଟିଛ ଭାଷା-ଫୁଲ
ତୁମ ବିନା ତା          ସରାଗ କାହିଁ
କରେ ବା କିଏ ମୂଲ ?
କଥାଛଳେ          ଅଟଗ କାହାର
ପରାଣ ଯେବେ ଉଛୁଳେ
ଦାରୁଣ ଢେଉ          ବାଜଇ ଆସି
ଏ ମରମ କୂଳେ ।
ବସନେ ପୋଛ          ଶରୀର ସ୍ୱେଦ
ସାହସେ ଜାଳି ଅଙ୍ଗ
ଅଙ୍କେ ଅନନ୍ତ          ମାନସପଟରେ
ତୁମର ରୂପରଙ୍ଗ ।
ଗୃହଁ ଗୃହଁ ଏ          ଶୂନ୍ୟ ଆକାଶେ
ପରାଣ ଯେବେ ସ୍ଫୁରେ
ବେଦନା-ତରଙ୍ଗ          ତୁମର ଲାଗି
ପରାଣେ ଉଛୁଳେ ।
କୋଟି ନୟନେ          ଦେଖିବା ଲାଗି
ଦଉଡେ ଯେବେ କାହିଁ
ପଥ ହରାଇ          ବଚନେ ବସୁ
କହେ କେ 'ନାହିଁ, ନାହିଁ' ।

ତଥାପି ଆଶା- ଦେଉଳେ ଶୁଭ—
ଆରତି ଘଣ୍ଟା ବାଜେ
ଅଜଣା ତୁମ ରୂପ-ଚପଳା
ମାନସେ ଏ ମୋ ରାଜେ ।
ସୃଷ୍ଟି କରେ ଫୁଲ ବଗିଚା
ତୁମର ପାଇଁ ସହି,
ତୁମ ଅଭାବେ ଫୁଟେ ନା ଫୁଲ
ପରାଣ ହୁଏ ଦହି ।
ଅଳି ଆସେ ନା ଫୁଲ-ଉଦ୍ୟାନେ
ଗନ୍ଧ ନାହିଁ ଛୁଟେ
ତୁମର ରୂପ— ଶୋଭା ମାତର
ଚଉଦଗେ ଫୁଟେ ।
କଲି ମନ୍ତ୍ରଣା ମନକୁ ମନ
ସମ୍ଭାଳି ନେଇ ଚିତ୍ତ
ନିକଟେ ଯାଇ ସଜ ଫୁଟିଲା
ଯୌବନ ତୁମ ବ୍ରତ
ଆଖି ପୁରାଇ ଦେଖି ଥରେ
ବାନ୍ଧି ପ୍ରେମ-ଜାଲେ
ଝୁଲିବ ମୁଁ ଚତୁର ହୋଇ
ଚିକ୍କଣ ତୁମ ଗାଲେ ।
କମଳ କଳି ଲୁଚେ ଜଡ଼ି
ରହିବି ହୋଇ ବାସ
କୋମଳ ତୁମ ପରଶେ ଦେଇ
ମାନସୁ ପରାସ ।

ମରମେ କା'ର ଖେଳେ କି କଥା
ଜାଣିବ ସହୁ କିଏ
ଜାଣିଲେ ଏକା ଜାଣିବ, ଯିଏ
ସୃଷ୍ଟି ଏମନ ଦିଏ ।
ସକଳ ଆଶା ଅଭିଳାଷ
ଖେଳନ୍ତି ମାଧ ମନେ
ବନ୍ଧୁ ମୋ ଗିରିଧାରୀ ବିନା
ଜାଣେ କେ ନାହିଁ ଜଣେ ।
ଅତୁଳ ଏ ମୋ ଅନ୍ତର ଖେଳ
ଆଶା-ପସରା ବହି
ସକଳ ଶକ୍ତି ତୁମରି ପାଶେ
ଧାଇଁଲି ଯେବେ ସହି
ଥରକୁ ଥର ଛୁଟିଲି ଯେବେ
ତୃପ୍ତିର ନିଶ୍ବାସ
ଚୁମ୍ବକ ହୋଇ ହରିଲ ଯେବେ
ଅନ୍ତର ପରଶ,
କୁସୁମ ହୋଇ ଫୁଟିଲ ଯେବେ
ଗନ୍ଧ ଛୁଟାଇ ଦେଇ
ଅକୂଳେ ତୁମ ପରଶ ଲାଗି
ବଢ଼ାନ୍ତେ ହାତ ନେଇ
ଅହୋ ଭାନୁ, ଭାନୁ ମୋର,
ଶୁଣିଲି କସ କଥା
ବଜ୍ର ପଡ଼ି ଫାଟିଗଲା
ଅହା ମୋର ମଥା !

ପ୍ରିୟା ମୋର, ପ୍ରାଣପ୍ରିୟା,
ଭାନୁ, ପ୍ରେମ-ରାଣି !
ଭାନୁ, ତୁମ ଦୁଆରେ ଯାଇ
ଶୁଣିଲି ଏ କ ବାଣୀ !
ଶ୍ରବଣ ଯାହା ଛିଡ଼ି ନ ଗଲା
ଚକ୍ଷୁ ନ ଗଲା ଫୁଟି
ଦମ୍ ଯାହା ଶରୀରୁ ମୋର
ଗଲା ନାହିଁ ତୁଟି !
ଅହା ପ୍ରିୟେ ସ୍ନେହର ଭାନୁ,
ପ୍ରେମ-ଭୁବନେଶ୍ୱର !
ଜପି ଜପି ତୁମ ନାମ
ହୋଇଛି ଏବେ ସର !
ପୂଜାରୀ ମୁଁ ଧରିଛି ହାତେ
ପ୍ରେମ-ଅର୍ଘ୍ୟ-ଧୂପ
ପୂଜୁଛି ନିତି ମନ-ମନ୍ଦିରେ
ତୁମ ଅଙ୍କଣା ରୂପ,
ଅନ୍ତରେ ବଢ଼େ ଅନୁକ୍ଷଣ
ତୁମରି ବାସନା
ନାମ ତୁମର ଜପିବାରେ
ହଟିନି ରସନା,
ନୟନ ସଦା ଜାଗିଛି
ଚାହିଁ ତୁମ ପଥ
ତୁମରି ତୀବ୍ର ଆକର୍ଷଣ
କଳନା କରେ ସତ,

କଥାରେ ପୁଣି କନ୍ଦର୍ପ ଲୋକେ
ଭଙ୍ଗେ ଯାହାକୁ ଯିଏ
ନଷ୍ଟସ୍ୱ ହେଲେ କଥା ତାଙ୍'
ବୁଝେ ଦନେ ସିଏ,
ଅନ୍ତରେ ଯେବେ ଟଣେକୁ ଜଣେ
ସତତ ଝୁରୁଥାଏ
ଅନ ଜଣକ ନଷ୍ଟେ ତା'ର
ମରମେ ବ୍ୟଥା ପାଏ,
ମାତ୍ର ମୋ'ହର ସକଳ ଧ୍ୟାନ
ପଦେ ଦେଇ ଦଳି
ଭୁନୁ, ହନୁ, ଭୁନୁ, ତୁମେ
ଗଲ କେଣେ ଚଳି ?
ବନ୍ଧୁସାଗର କୂଳେ ଯେବେ
ହୋଇଲ ଠିଅ ଛପି
ଶେଷ ଦେଖା ପାଇବ ବୋଲି
ମନମଧ୍ୟେ ଜପି,
ଅସିଲ ତୁମେ ଦଳବାନ୍ଧି
କାଳ ଅନ୍ଧାରରୁ
ତାରାଦଳେ ଚନ୍ଦ୍ରପରି
ଦଶିଲ ଦୂରରୁ ।
ସକାଳଠାରୁ ଅସିଲ ଉଠି
କ୍ଳେଶ ଅଯତନ
ଅଭିନବ ଶୋଭା ଏକ
[illegible] ଧାରଣ

ଅଙ୍ଗୁ ଛବ ଝୁରୁପଡ଼େ
ଯୌବନ-ମଦସ୍ର
ଚପଳା-ଅଭ୍ର ଚଢେ ତୁମ
ଅଙ୍ଗେ ମୋହ-ଜ୍ୱାଳା ।

ଝଙ୍କଳ ମୋର ମନପ୍ରାଣ
ତୁମ ପରଶ ଲାଗି
ଅକୂଳଭରେ ଥର ଥର
ଉଠିଲା ମନେ ଜାଗି ।

ଦୁର୍ବଳ ପାଦ ଉଠିଲା କମ୍ପି
ଶିଥିଳ ହେଲା ଅଙ୍ଗ
ନୟନେ ଅଶ୍ରୁ ଉଠିଲା ପୂରି
ଲୋଡ଼ି ତୁମର ସଙ୍ଗ ।

କଟାକ୍ଷ ତୁମ ବାଢ ହେଲା
ସୂକ୍ଷ୍ମ ଏ ମୋ ମନେ
ଭୁଲି ଯାହା ପାଚିବାନ
ଥିଲେ ଏ ଜୀବନେ ।

ସ୍ମନସାର ହେଲ ଠିଆ
ପାହାଚେ ଝୁଲି ଝୁଲି
ମଣ୍ଡନ ଗଲା ମୋ ମନ ସନ୍ତାପ
ମଥଃ ଗଲା ଘୁରି ।

ଚଳିଲି ଘରେ ଭାଷିଲି ଧୀରେ,
"ପାଶବ କି ଯାଇ ?"
ତୁପ୍ କିନା ମାନସେ କିଏ
କହିଲା, "ନାହିଁ, ନାହିଁ ।"

ତଥାପି ଅଶା ନଦେଲା ମନ୍ତୁ
ଗଲୁ ପଛେ ତବ
ଅସାର ସିନା ତୁମ ଅଭ୍ରବେ
ଦଣିଲୁ ଏହୁ ଭବ ।
ପାଇ ତୁମକୁ ରଚ ଥାଅନ୍ତ
ସର୍ଗ ଇତିହାସ
ହଂସାରୂପେ ସମାଜ କଲୁ
କରିଲ ଉପହାସ ।
ପ୍ରବେଶ ହେଲ ଗୃହେ, ଡାକିଲ,
"ପ୍ରିୟ ମୁହିଁ କାହିଁ ?"
ଏଥର କଲୁ ବୃଦ୍ଧ ସ୍ୱରେ
ସମାଜ କଲ "ନାହିଁ" ।

---

( ମୃଗଜ—ତୃଷ୍ଣା )

ପ୍ରିୟ ସହି ! ବରଷା ପଡ଼ଇ ଝର ଝର ଝର ତାଳେ
ଉଦାସ ଶୀତଳ ଛାୟା ରଚେ ସୁଖ-କଳ୍ପନା ପର୍ବାଣ,
କାହାର କୋମଳ ପରଶ ଲାଗି ଉଠେ ଥରି କର,
ତୁମ ଲାଗି ସହି ? ଜାଣେନା ତ ତୁମେ ମୋର ସୁଖର ସାଗର
ହୋଇ ଅହପଚ, ଖିପ୍ର ପରି ଇତସ୍ତତଃ କରି ଏ ମାନସ;
ମୃଗ ଯଥା ଏଣେତେଣେ ଖୋଜଇ କସ୍ତୁରୀ ହୋଇ ଭ୍ରମବଶ ।
ପ୍ରେମନାମେ ଅତ୍ୟାଗ୍ରହ କରେ ଅନେ ଯେତୁ
ଅକାରଣେ ବିଶ୍ୱବେଶ ନଗାଡ଼ ରକତ ତା ଦେହୁ

ବୋଲାଏ ପ୍ରେମିକ ନଜେ, ପ୍ରକୃତ ଯେ କନ୍ତୁ କରେ ଉପହାସ
ଭଣ୍ଡ ତାର ଅଭିନୟ କରେ ସେହୁ ଯେଣୁ ପରକାଶ ।
ବାସନାତ ମେଣ୍ଟେ ନାହିଁ, ଆସେନା ତ ଶାନ୍ତି ଓ ସାନ୍ତ୍ୱନା
ବରଞ୍ଚ ଅକାରେ ମାତ୍ର ଦିଏ ଦେଖା ବ୍ୟଥା କର ପ୍ରବଞ୍ଚନା ।
ସଜନରେ, ମୂଳତତ୍ତ୍ୱ ତାର ବୁଝେ ତେଣୁ ଏ ମୋ ଯୁଗ୍ମକର
ପ୍ରକୃତର ଅଭାଗ୍ୟର ଲାଗି ତେଣୁ ହୁଏ ଥର ଥର ।
ବୁଝିଛ ସଜନ ତୁମେ ମୋର ଏକମାତ୍ର ଧ୍ୟାନ
ଅବିରତ ତୁମ ପାଶେ ଯାଏଁ ଏ ମୋ କ୍ଷୁଦ୍ର ପରାଣ ।
ଆସ ତେଣୁ ସହ ନବଢ଼ ବରଷାସ୍ରୋତ ଶୀତବାଆ ଲଭ
ପ୍ରେମର ତ୍ରିଦିବ-ସୁଖ ଯିବା ଅନୁଭବ;
ସ୍ୱର୍ଗ, ଅଲିଙ୍ଗନ ଆଶେ ହେଲଣି ଅବଶ
ପ୍ରେମିକାଗୋ, ପ୍ରେମଲାଗି କର ଅନୁକୂଳ କର ଏ ମୋ ଜୀବନ ସରସ

—— o ——